# ପୃଥିବୀର ଲୋକକଥା

## ଲଦାଖ ଲୋକକଥା

( ପ୍ରଥମ ଭାଗ )

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି.ଏସ୍.ସି., ଏଲ୍.ଏଲ୍.ବି,
ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍. ଏ., ବି. ଇଡ୍,

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# PRUTHIBIR LOKAKATHA

Ladak Lokakatha

Pratham Bhaga

# ପୃଥିବୀର ଲୋକକଥା

ଲଦାଖ ଲୋକକଥା

ପ୍ରଥମ ଭାଗ



ପ୍ରକାଶକ :
**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**
ପୋ-ଦଘାଲ, ଜି-ପୁରୀ

ତୃତୀୟ ସଂସ୍କରଣ :
୧୪-୫-୨୦୦୧

ପ୍ରଚ୍ଛଦପଟ :
ଶ୍ରୀ ରବନାରାୟଣ ନାୟକ

ମୁଦ୍ରଣ :
ଗାମସେବକ ସମବାୟ ପ୍ରକାଶନ ଲିଃ,
ବାଖରାବାଦ, କଟକ-୨

ମୂଲ୍ୟ : ଦଶଟଙ୍କା ମାତ୍ର

# ସୂଚୀପତ୍ର





# ନିବେଦନ

ଆଜି ଆମେ ଦୁର୍ଦ୍ଦିନର ସମ୍ମୁଖୀନ ।

ଆମେ ଏଠାରେ କେତେକାଳ ହେଲା ଅଛୁ ତାହା ନିର୍ଣ୍ଣୟସାପେକ୍ଷ । ବସ୍ତର ସଭ୍ୟତା ଏହାକୁ ଅଶୀ ହଜାର ବର୍ଷ ତଳକୁ ଲମ୍ବାଇ ଦେଲାଣି ।

ଆର୍ଯ୍ୟମାନେ ଏଠାକୁ ଆସିବାଟା ପ୍ରାୟ ପାଞ୍ଚ ହଜାର ବର୍ଷ ତଳର କଥା । ତାର ବହୁପୂର୍ବରୁ ମୁଣ୍ଡାମାନେ ଉତ୍ତର ପୂର୍ବ ଦିଗରୁ ଆସିଥିଲେ । ସାନ୍ତାଳମାନେ ମୁଣ୍ଡା ସଂପ୍ରଦାୟର ଅଂଶ ବିଶେଷ ।

ମଣିଷର ହେତୁ ଯାଇଲାଦିନୁ କପରି ସେ ସୁସ୍ଥ ପରିବେଶରେ ଭଲରେ ରହିବ, ସେଥିପାଇଁ ତାର ଚିନ୍ତା । ଅଭିଜ୍ଞ ମଣିଷ ତାର ଅଭିଜ୍ଞତା ଓ ଚିନ୍ତାଧାରା ଉତ୍ତର ପୁରୁଷକୁ ଉପଦେଶ ମାଧ୍ୟମରେ ଦିଏ । ସବୁ ମଣିଷ ଲଙ୍ଗଳାରେ ଅସୁନ୍ଦର । ସୁନ୍ଦର କରିବାକୁ ତାର ପୋଷାକ ଲୋଡ଼ା । ସେହିପରି ସବୁ ଉପଦେଶ ବିରକ୍ତିକର । ତାର ପରିବେଷଣ ଚିତାକର୍ଷକ ଗପ ମାଧ୍ୟମରେ ହୋଇଛି । ସେସବୁ ହେଲା ଲୋକକଥା । ଏହାର ପ୍ରଚୁର ଦରକାର ।

ସାନ୍ତାଳମାନେ ଜଙ୍ଗଲରେ ରହନ୍ତି । ସ୍ବଭାବ ପ୍ରଭୃତି ସେମାନେ ଭଲ ପାଆନ୍ତି । ଶିକାର ତାଙ୍କର ଜୀବିକା । ସେମାନେ ମଜାକରି ଆରାମରେ ଖୁସିବାସିରେ ରହିବାକୁ ଭଲ ପାଆନ୍ତି । ସେମାନଙ୍କ ଲୋକକଥା ଊନବିଂଶ ଶତାବ୍ଦୀର ଶେଷ ଭାଗରେ ସେସିଲ ହେନ୍‌ରି ବୋମ୍ପାସ୍ ଆଇ.ସି.ଏସ୍. ଇଂରାଜୀରେ ଅନୁବାଦ କରିଥିଲେ । ତାହା ଓଡ଼ିଆରେ ରୂପାନ୍ତରିତ କରାଯାଉଛି । ଚଉଦ ଖଣ୍ଡ ବହିରେ ଏହା ସରିବ ।

ଏହି ଉଦ୍ୟମର ସଫଳତା ପାଇଁ ଆପଣଙ୍କର ସାହାଯ୍ୟ ସହାନୁଭୂତି ଓ ସଦିଚ୍ଛା ଦରକାର ।

ଲକ୍ଷ୍ମୀଧର ମହାନ୍ତି

# ଲଦାଖ

ପୃଥିବୀ ଆଜି ବିଶୃଙ୍ଖଳ । ଅପରାଧ ଓ ଅପରାଧୀଙ୍କ ସଂଖ୍ୟା ବଢ଼ିଚାଲିଛି । କିନ୍ତୁ ଭାରତର ଉତ୍ତର ସୀମାନ୍ତ ଅଞ୍ଚଳ 'ଲଦାଖ' ଏକ ବ୍ୟତିକ୍ରମ । ଏଠାରେ ଅପରାଧ ନଗଣ୍ୟ ।

ଲଦାଖୀମାନେ ବୌଦ୍ଧ ଧର୍ମାବଲମ୍ବୀ । କଥିତଅଛି, ଏଠାରେ ଥିଲା ଅମିଶ୍ରିତ ବୌଦ୍ଧଧର୍ମ । ସ୍ୱଚକ୍ଷୁରେ ଦେଖିବାପାଇଁ ଏଠାକୁ ଆସିଥିଲେ ବିଶ୍ୱବିଖ୍ୟାତ ପରିବ୍ରାଜକ ଫାହିୟାନ୍ ଓ ହ୍ୟୁଏନ୍‌ସାଂ ୪୦୦ ଖ୍ରୀ·ଅ·ରେ । ଏବେ ବି ପାହାଡ଼ ଉପରେ ଅଗଣିତ ଗୁମ୍ଫା ( ବୌଦ୍ଧ ମଠ ) ଅଛି । ପ୍ରାୟ ୧୫୦୦ ଲାମା ( ବୌଦ୍ଧ ସନ୍ନ୍ୟାସୀ ) ଓ ୧୦୦ ଚୋମୋସ (ବୌଦ୍ଧ ସନ୍ନ୍ୟାସିନୀ) ଏଠାରେ ଧ୍ୟାନମଗ୍ନ । ବୌଦ୍ଧଧର୍ମକୁ 'ଲାମାଧର୍ମ' ଓ ଏହାକୁ 'ଲାମା ଦେଶ' କୁହାଯାଏ । ଏଠାକାର ଲୋକମାନେ ଶାନ୍ତ ସରଳ ସ୍ନେହୀ, ଅତିଥିପରାୟଣ, ଭଦ୍ର, ନମ୍ର, ସଂସ୍କୃତି-ସମ୍ପନ୍ନ ଗୁପ୍ତବାଦୀ ଓ ନର୍ତ୍ତନତାପ୍ରିୟ । ସେମାନଙ୍କ ମଧ୍ୟରେ ଜାତି, ଧର୍ମ, ବର୍ଣ୍ଣଗତ ବିଦ୍ୱେଷ ନାହିଁ ।

ଆତ୍ମରକ୍ଷା ପାଇଁ ପଶ୍ଚିମପଟରୁ ତିବ୍ଦତ ଓ ପୂର୍ବପଟରୁ କାଶ୍ମୀରର ଆକ୍ରମଣକୁ ସେମାନେ ବହୁବାର ପ୍ରତିହତ କରିଛନ୍ତି । ହାରିଛନ୍ତି ବି ଅନେକବାର । ଏଠାରେ ଯେ ଜିତିଛି—ସେ ଜେତାର ଗ୍ଲାନନେଇ ଫେରିନାହିଁ । ପରାଜିତ ଲଦାଖର ସଂସ୍କୃତି ନେଇ ସେ ଫେରି ଯାଇଛି । ଏଠି ବିଜେତା ପ୍ରସ୍ତରର ସ୍ତୁପ ଟିକିଏ ବି ନାହିଁ । ସଂସ୍କୃତିକ ପରିବର୍ତ୍ତନର ଆବର୍ତ୍ତମାରେ ମଣିଷ ଏଠି ଗଢି ଉଠିଛି ।

୧୮୩୩ ମସିହା । କାଶ୍ମୀରର ଡୋଗ୍ରା ସୈନ୍ୟବାହିନୀ ଲଦାଖ, ଗିଲଗିଟ୍ ଓ ବାଲଟିସ୍ଥାନ ଦଖଲ କରିନେଲେ । ଶାସନ

ପାଇଁ ସେଗୁଡ଼ିକୁ ଗୋଟିଏ ପ୍ରଦେଶ କରି ଏକ ଶାସନାଧୀନ କରିଦେଲେ । ସେଇଦିନୁ ଏ ଅଞ୍ଚଳ କାଶ୍ମୀର ରାଜ୍ୟର ଏକ ଅଂଶ, ଲଦାଖ ନାମରେ ପରିଚିତ ।

୧୯୪୭ । ଭାରତର ସ୍ୱାଧୀନତା ସଙ୍ଗେ ସଙ୍ଗେ ଭାରତ ଓ ପାକିସ୍ଥାନର ସୃଷ୍ଟି । ୧୯୪୮ରେ ପାକିସ୍ଥାନୀ ଗଢ଼ା 'କାଶ୍ମୀର ମୁକ୍ତି ବାହିନୀ' କାଶ୍ମୀରକୁ ଦଖଲ କରିବାକୁ ପୂର୍ବଗିଲ୍ ଗିଟ୍‌ବାଟେ ଲଦାଖକୁ ପଶି ଆସିଲେ । ସେମାନଙ୍କୁ ଭାରତରୁ ତଡ଼ିବା ପାଇଁ ଭାରତୀୟ ସୈନ୍ୟ ଆପ୍ରାଣ ଚେଷ୍ଟା କଲେ । ଜାତିସଂଘ ହସ୍ତକ୍ଷେପ ଫଳରେ ଯୁଦ୍ଧ ବନ୍ଦ ହେଲା । ଯୁଦ୍ଧ-ବିରତି ସୀମାନ୍ତରେଖା ଅନୁଯାୟୀ ଉତ୍ତରରେ ଥିବା 'ବାଲ୍‌ତିସ୍ଥାନ' ବା କ୍ଷୁଦ୍ରତିବ୍ବତ ରହିଗଲା ପାକିସ୍ଥାନରେ । ଲେହ ଓ ଦକ୍ଷିଣ ଲଦାଖ ଭାରତରେ ରହିଲା । ଏ ହେଲା—ଲଦାଖର ପ୍ରଥମ କାରୁଣ୍ୟ ।

'ଆକାଶାଇଚେନ' ଲଦାଖର ଉତ୍ତରାଂଶ । ଏହାର କିଛି ଅଂଶ ୧୯୫୮ରେ ଚୀନାମାନେ ଦଖଲ କରି ସେଠାରେ ସ୍ଥାୟୀ ରାସ୍ତା ନିର୍ମାଣ କଲେ । ଭାରତ ପ୍ରତିବାଦ କଲା । ୧୯୫୯ରେ ବଳପୂର୍ବକ ଚୀନମାନେ 'ଚୁଙ୍ଗଲୋମୋ' ଉପତ୍ୟକା ଦଖଲ କରି-ନେଲେ । ୧୯୬୨ରେ ସେମାନେ ଲେହ ପର୍ଯ୍ୟନ୍ତ ମାଡ଼ି ଆସିଲେ । ଆକ୍ରମଣର ପ୍ରତିରୋଧ ସ୍ୱରୂପ ବହୁ ଭାରତୀୟ ଜବାନଙ୍କର ତାଜାରକ୍ତରେ ଲଦାଖର ସୁନେଲି ମାଟି ରଞ୍ଜିତ ହେଲା । ପୃଥିବୀର ଜନମତ ଚାପରେ ଚୀନାମାନେ ଏ ଦେଶରୁ ଚାଲିଗଲେ ସତ—ହେଲେ ପୂର୍ବ ଅଧିକୃତ ଆକାଶାଇଚେନ' ଓ ଚୁଙ୍ଗାନାମୋ ଉପତ୍ୟକା ମାଡ଼ିବସିଲେ । ଲଦାଖର ଏ ହେଲା ଦ୍ୱିତୀୟ କାରୁଣ୍ୟ ।

ଲଦାଖ୍‌ର ଅନ୍ୟନାମ ଲଦ୍‌ଓ୍ୟାଗ୍ । ସ୍ଥାନୀୟ ଭାଷାରେ ଏହା 'ମ୍ୟାରୁଲ୍' ବା ନୀଚଜାଗା 'ଖଂଚପା' ବା ବରଫଦେଶ । ଲଦାକ' ଓ ଲଦାଗ' ଏହାର ଅପଭ୍ରଂଶ ।

ଏହା ପଶ୍ଚିମ ହିମାଳୟର ପଶ୍ଚିମାଂଶ । ସିନ୍ଧୁନଦୀର ଉପରମୁଣ୍ଡର ଅବବାହିକା । ୩୨·୪°ରୁ ୩୬° ଉତ୍ତର ଅକ୍ଷାଂଶ ୭୪·୬°ରୁ ୮୦·୩° ପୂର୍ବ ଦ୍ରାଘିମା ମଧ୍ୟରେ ଅବସ୍ଥିତ । ଏହାର ଉତ୍ତରରେ ଚୀନର ସିକୟାଂ, ପୂର୍ବରେ ତିବ୍ବତର ନଗ୍‌ରୀ ଓ ରୁଦ୍‌କ ପ୍ରଦେଶ । ପଶ୍ଚିମରେ ବାଲଟିସ୍ଥାନ ଓ ଦକ୍ଷିଣରେ କାଶ୍ମୀର । ଏହାର କ୍ଷେତ୍ରଫଳ ୯୭୮୭୨ ବର୍ଗ କିଲୋମିଟର । ଲୋକସଂଖ୍ୟା ପ୍ରାୟ ୧୦୫୨୯୧ ।

ଏହାର ଉତ୍ତରରେ କୁନ୍‌ଲୁନ୍ ଆଉ କାରକୋରମ ପର୍ବତମାଳା । ମଝିରେ 'କୈଳାସ', 'ଲଦାଖ' ଓ ଉଚ୍ଚ ହିମାଳୟ ପର୍ବତମାଳା । ଦକ୍ଷିଣରେ ଜନ୍‌ସକର ପର୍ବତମାଳା । ଏଗୁଡ଼ିକ ପରସ୍ପର ସମାନ୍ତର ଓ ଏମାନଙ୍କ ଉଚ୍ଚତା ୨° ହଜାର ଫୁଟରୁ ଉର୍ଦ୍ଧ୍ୱ । ଏହାର ଶୃଙ୍ଗ 'ନୁ୍ୟବ୍ରା' 'କୁନ୍' 'ନୁନ୍' ଓ ଆହୁରି ଅନେକ—ଯାହାଙ୍କର ନାମକରଣ ଏ ପର୍ଯ୍ୟନ୍ତ ହୋଇ ନାହିଁ । ଏଗୁଡ଼ିକସବୁ ପୃଥିବୀର ଉଚ୍ଚତମ ଶୃଙ୍ଗ । ସେମାନେ ବି ଅଜେୟ ।

ଏଇ ପର୍ବତମାଳାକୁ ସଂଯୁକ୍ତ କରିଛି ଶ୍ରେଷ୍ଠ ଶ୍ରେଷ୍ଠ ପର୍ବତ । ଏଗୁଡ଼ିକ ବି ନଭସ୍ପର୍ଶୀ । ଦୁର୍ଭେଦ୍ୟ । ଏହାର ଶୀର୍ଷ ନିର୍ମଳ ନୀଳଆକାଶ ଭିତରେ ଲୁକ୍‌କାୟିତ । ମନେହୁଏ ଆକାଶ ପୃଥିବୀ ଏଠାରେ ମିଶିଯାଇଛି । ପାହାଡ଼ ଏଠି ସୁନେଲି ମୁଗୁନି ପଥରର । କଳୁ ରୁକ୍ଷ । ମଝିରେ ମାଳଭୂମି । ସୁନେଲି ମୁଗୁନି ପଥରର ଧୂଳିରେପୂର୍ଣ୍ଣ । ଦିଗନ୍ତ ବ୍ୟାପୀ ସମତଳ । ଉଚ୍ଚତା ପ୍ରାୟ

୧୨୦୦୦ରୁ ୧୬୦୦୦ ଫୁଟ । ତାର ସ୍ଥିରପଟ୍ଟ କାନ୍ଥପରି ପାହାଡ଼ ଧୋଇ ରହିଛି । ଏଇ ପାହାଡ଼ର ରଙ୍ଗ ଜହ୍ନ ଆଲୁଅରେ ଓ ଖରାରେ ଘନ ଘନ ବଦଳୁଥାଏ । ଏ ଦୃଶ୍ୟ ପରିବ୍ରାଜକଙ୍କୁ ବିଭୋର କରେ । ସେମାନଙ୍କ ଭାଷାରେ ଏହା "ସ୍ୱପ୍ନରାଇଜ ।" ସ୍ଥିରପଟ୍ଟ ପର୍ବତମାଳା ଦୁର୍ଭେଦ ନଦୀମାନଙ୍କଦ୍ୱାରା ବିଚ୍ଛିନ୍ନ । ମଝିରେ ମଝିରେ ଗିରିପଥ ବି ଅଛି । ତେଣୁ ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଯାଇ ହେଉଛି । ଏହି ଗିରିପଥକୁ "ଲ" କହନ୍ତି ।

ଭୂତତ୍ତ୍ୱବିଦ୍‌ମାନଙ୍କ ମତରେ ବହୁବର୍ଷତଳେ ଏହା ସମୁଦ୍ର ଭିତରେ ଥିଲା । କାଳକ୍ରମେ ଉପରକୁ ଉଠିଛି । ଏ କଥାଟି ଲଦାଖୀ ପୁରାଣରେ ବର୍ଣ୍ଣିତ । ଏବେ ମଧ୍ୟ ଜଳ ଜନ୍ତୁଙ୍କର ହାଡ଼ ପାହାଡ଼ ଗହ୍ୱରରେ ଦେଖିବାକୁ ମିଳେ ।

'କାର୍‌ଗୀଲ୍' 'ଜନ୍‌ସକର୍' 'ରୁପ୍‌ସା' 'ନୁବ୍ରା' ଆକାଶାଇ-ଚେନ୍' ଓ 'ଲେହ' ପ୍ରଭୃତିକୁ ନେଇ ଲଦାଖ ଗଠିତ । ଏଠାରେ ସିନ୍ଧୁ ନଦୀ ଓ ଚାରି ଉପନଦୀ 'ସାୟୁକୋ', 'ନ୍ୟୁବ୍ରା', 'ରୁପ୍‌ସା', 'ଜନ୍‌ସକର' ଏବଂ ସେମାନଙ୍କର ଉପନଦୀ ପ୍ରବାହିତ । 'ସାଇଷ୍ଟର ଗାଇନ୍‌ଶ୍' ତୁଷାର ସ୍ରୋତରୁ ନ୍ୟୁବ୍ରା ନଦୀର ଉତ୍ପତ୍ତି । ଏଠାରେ ଅନେକ ତୁଷାର ସ୍ରୋତ ଦେଖିବାକୁ ମିଳେ । ତନ୍ମଧ୍ୟରେ 'ବାଲ୍‌ଟୋ' ଅନ୍ୟତମ । ଏହା ଉତ୍ତର ଗୋଲାର୍ଦ୍ଧର ବୃହତ୍ତମ ତୁଷାର ସ୍ରୋତ । ଏହାର ଲମ୍ବା ୩୫ ମାଇଲ ।

ଲଦାଖର ପୂର୍ବାଞ୍ଚଳରେ ବହୁତ ହ୍ରଦ ଅଛି । ପାଣି ସେମାନଙ୍କର ଲୁଣିଆ । ତ୍ସୋମୋରିରି ତ୍ସୋଂଲୁଙ୍ଗ୍ ଓ ପାନାମିକ୍ ଠାରେ ଉଷ୍ଣପ୍ରସ୍ରବଣ ଦେଖିବାକୁ ମିଳେ ।

ମୌସୁମୀବାୟୁ ନମ୍ର ହିମାଳୟକୁ ଡିଏଁ ନାହିଁ । ତେଣୁ ଉତ୍ତର ହିମାଳୟ ବୃଷ୍ଟିହୀନ ଅଞ୍ଚଳ । ହାରାହାରି ବାର୍ଷିକ ବୃଷ୍ଟିପାତ ୭ ସେଣ୍ଟି ମିଟର ମାତ୍ର । 'ଜୋଜିଲା' ଗିରିପଥ ଡେଇଁଲେ ଲଦାଖ । ପବନରେ ଆଦ୍ରତା କମ୍ ରହୁଥିବାରୁ ଏଠାରେ ତୁଷାରପାତ ମଧ୍ୟ ଅଳ୍ପ । ଏମିତିକି ଲଦାଖର ଶେଷ ଅଂଶରେ ତୁଷାରପାତର ସୀମାରେଖା ୨୦ ହଜାର ଫୁଟ ଉପରେ । ଏଠି ବର୍ଷା, ବସନ୍ତ ଓ ଗ୍ରୀଷ୍ମଋତୁ ମିଶି ପାଞ୍ଚ ମାସ । ଅନ୍ୟ ସାତମାସ ଶୀତ । ପ୍ରବଳ ଶୀତ ଓ ତୁଷାରପାତ ଯୋଗୁଁ ରାସ୍ତାଘାଟ ବନ୍ଦ । ନଈ ଓ ନାଳ ପାଣି ସବୁ ବରଫ ପାଲଟି ଯାଏ । ଜନ୍‌ସକର ତାହାର ଅଞ୍ଚଳରୁ ଛମାସ ବିଚ୍ଛିନ୍ନ ହୋଇ ରହେ ।

ପ୍ରବଳ ଅଣ୍ଡାପର ଏଠାରେ ରୌଦ୍ର ତାପ ପ୍ରଖର । ତାହାର ଖରା ଓ ଛାଇ ତଳର ଉତ୍ତାପର ତଫାତ୍ ପ୍ରାୟ ୭୦ ଡିଗ୍ରୀ ଫାରେନ୍‌ହିଟ । ଖରାଦିନେ ଉତ୍ତାପ ୯୦ ଡିଗ୍ରୀ ପର୍ଯ୍ୟନ୍ତ ଯାଏ । ଶୀତଦିନେ ଶୂନ୍‌କୁ ଖସି ଆସେ । ଲେହରେ ଖରାଦିନେ ଉତ୍ତାପ ୭୦ ଡିଗ୍ରୀ ଫାରେନହିଟ ଓ ଶୀତଦିନେ ୨୦ ଡିଗ୍ରୀ ଫାରେନ୍-ହିଟ୍ । ଜାନୁୟାରୀ ଓ ଫେବୃୟାରୀରେ ପବନଧୀର । ଏପ୍ରିଲ ମେ ରେ ଗତି ପ୍ରଚଣ୍ଡ । ଶୁଷ୍କ ବାୟୁ ଗଛପତ୍ର ଶୁଖାଇ ଦିଏ ।

'ଦ୍ରାସ'ରେ ପୁରାତନ ଆଦିମ ଆର୍ଯ୍ୟମାନେ ରହନ୍ତି । ସେମାନଙ୍କୁ 'ବ୍ରୋକପାଶ୍' କୁହାଯାଏ । ପୃଥିବୀର ଉଚ୍ଚତମ ମାନବ ବସତି 'ରୁପ୍‌ସୁ' ଆଉ ଶୀତଳତମ ମାନବ ବସତି 'ମାଟାଇନ' ଓ 'ଦ୍ରାସ' ଏହାର ଅନ୍ତର୍ଭୁକ୍ତ ।

ଏଠାକାର ମାଟି ଉର୍ବର । ଜନବସତି ସବୁ ନଈକୂଳରେ ଆଉ ଜଳାଶୟ ପାଖରେ । ରୁପ୍‌ସୁ'ର ଚରଣଭୂମି ଅଛି । ସେଠାର

ଲୋକେ ଯାଯାବର । ଛେଳ ମେଣ୍ଢା ଚରାଇ ପେଟ ପୋଷନ୍ତି । ପାଣି ପାଖରେ ବୃକ୍ଷଲତା ଦେଖିବାକୁ ମିଳେ । ଅଧିକାଂଶ ଗୁଳ୍ମ ଗ୍ଲେଟ ଗ୍ଲେଟ । ଜାଳ ସ୍ୱରୂପରେ ଲୋକେ ତାକୁ ବ୍ୟବହାର କରନ୍ତି ।

ସାଧାରଣ ଲୋକ ମାଟିଘରେ ରହନ୍ତି । ସରକାରୀ ଅଫିସ ଓ ଧନୀମାନଙ୍କ ଘର ପଥରରେ ତିଆରି । ଲୋକେ ନିର୍ଜନତାପ୍ରିୟ । ପାହାଡ଼ ଉପରେ ଏମାନଙ୍କ ଘର—ଅଲଗା ଅଲଗା । ଗୁରୁଆଡ଼େ ସୌନ୍ଦର୍ଯ୍ୟର ପସରା । ଧୂନେଲି ରଙ୍ଗର ଢେଉ । ମୁଣ୍ଡ ନିର୍ମଳ ନୀଳ ଆକାଶକୁ ଛୁଏଁ । ଦେବଭୂମିରେ ରହିଲା ଭଳି ଲାଗେ ।

ଲଦାଖୀ ପୁରୁଷ କର୍ମଠ । ସଫଳ ଗୃଷୀ । ଜଳବାୟୁ ପ୍ରତିକୂଳ । ତଥାପି ନଦୀରୁ ପାଣି ଉଠାଇ ଏମାନେ ବାର୍ଲି, ଗ୍ରୀମ୍ (ସିଙ୍ଗ ନ ଥିବା ବାର୍ଲି ) ଜୁଆର, କୋବି ବିଶେଷତଃ ଓଲକୋବି ଆଳୁ, ମଟର, ଶିମ୍ବ ମୂଳା, ପ୍ରଭୃତି ଗୃଷ କରନ୍ତି । ଅପେକ୍ଷାକୃତ କମ୍ ଥଣ୍ଡା ଅଞ୍ଚଳରେ ସେଓ ବାଦାମ ଆଖରୋଟ ତୁତ (ମଲବେରି) ଫଳ ଗୃଷ ହୁଏ ।

ଲଦାଖୀ ଗୃହିଣୀ ସାଜସଜ୍ଜାରେ ନିପୁଣା । ଘରଦ୍ୱାର ତାର ସବୁବେଳେ ସଫା । ବାସନ-କୁସନ ଘରର ଆସବାବ ସବୁ ସେ ସଜାଇ ରଖେ ।

ଏଠାରେ ଗୋରୁକୁ 'ଜୁ' କହନ୍ତି । ଲୋକେ 'ଜୁ' ଚମରୀଗାଈ ଛେଳ ମେଣ୍ଢା 'ହୁନଆ' (ଭରବାଣ୍ଟ ମେଣ୍ଢା) ଓ କୁକୁର ପାଳନ୍ତି । ଲଦାଖର ପଶମ ପୃଥିବୀ ପ୍ରସିଦ୍ଧ । ତାକୁ ଏଠି 'ପଶ୍ମୀନା' କହନ୍ତି । ଏଠାକାର ଲୋକେ ମାଂସାଶୀ । ଶୀତଦିନପାଇଁ ଖରାଦିନେ ମାଂସ ଶୁଖାଇ ରଖନ୍ତି । ଗୃଷ ଓ ମାଂସ ପାଇଁ ଏମାନେ ପଶୁ ପାଳନ୍ତି ।

ଏଠାକାର କୁକୁର ଦୁଇ ପ୍ରକାରର । ଗୋଟିଏ ବଡ଼ । ଅନ୍ୟଟି ଗ୍ଲେଟ । ଗ୍ଲେଟ ଦେହରେ ଏତେ ବାଳ ଯେ ତାର ଆଖି ବ ଘୋଡ଼େଇ ହୋଇପଡ଼େ । ଏମାନଙ୍କର ରଙ୍ଗ ଧୂସର । ଲୋକେ ଗ୍ଲେଟ କୁକୁରକୁ ବେଶୀ ଭଲ ପାଆନ୍ତି ।

ଗୃହପାଳିତ ପଶୁଛଡ଼ା ଏଠି ବଣୁଆ ଛେଳି ଭାଲୁ କୃଷ୍ଣସାର ମୃଗ ଓ ଗୁଣ୍ଡୁଚିମୂଷା ଭଳି ଗ୍ଲେଟ ମୂଷା ବ ଦେଖିବାକୁ ମିଳେ । ସରୀସୃପ ପ୍ରାୟ ଦେଖାଯାନ୍ତି ନାହିଁ ।

ଝରଣାରେ ମାଛ ପ୍ରଚୁର । ଏମିତିକ ସେମାନେ ସମୁଦ୍ର ପତ୍ତନଠାରୁ ୧୫ ହଜାର ଫୁଟ୍ ପାହାଡ଼ୀ ଝରଣାରେ ଦେଖା-ଯାଆନ୍ତି । ଲଦାଖୀମାନେ ମାଛ ଧରନ୍ତି ନାହିଁ । ମାଛକୁ ନ ଅ' କହନ୍ତି ।

ପ୍ରବଳ ଶୀତରୁ ରକ୍ଷା ପାଇବା ପାଇଁ ଏଠି ଲୋକମାନେ ପଶମ କମ୍ବା ଭେଲଭେଟ୍‌ର ରଙ୍ଗୀନ ଗାଉନ୍ ପିନ୍ଧନ୍ତି । ପେଟପାଖ ଖୁବ୍ ଢିଲା । ଟୋପି ପଶମ କମ୍ବା ଚମଡ଼ାରେ ତିଆରି । ଲୋକଙ୍କର କଳାରଙ୍ଗକୁ ବେଶ୍ ପସନ୍ଦ । ନାଲି ହଳଦିଆ ରଙ୍ଗ ମଧ୍ୟ ଚଳେ । ସାଧାରଣ ଲୋକେ ଦୁଇରଙ୍ଗିଆ ଯୋତା ପିନ୍ଧନ୍ତି । ଲାମାମାନଙ୍କ ଜୋତା ଲାଲ୍ । ସ୍ତ୍ରୀ ଲୋକଙ୍କର ମୁଣ୍ଡର ପୋଷାକ ଭାରି ସୁନ୍ଦର । କାରୁକାର୍ଯ୍ୟ ଖଚିତ । ନୀଳ ପଥର ସେଥିରେ ବସିଥାଏ । ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ଏହା ଓହଳେ ।

ଏଠାର ଲୋକେ ଅପରିଚ୍ଛନ୍ନ । ଦେହକୁ ସଫା ବ କରନ୍ତି-ନାହିଁ । ଖୁବ୍ ମଳ ଜମିଲେ ଲହୁଣୀ ସାହାଯ୍ୟରେ ମଳ ଛଡ଼ାଇ ଦେହକୁ ସଫା କରନ୍ତି ।

ଗ୍ରୀମ୍ ଏମାନଙ୍କର ପ୍ରଧାନ ଖାଦ୍ୟ । ତାକୁ 'ଜାନ୍' ବୋଲି କହନ୍ତି । ଗ୍ରୀମ୍ ଚୂନାକୁ ଭଜାକରି ଚା କମ୍ବା ତାଙ୍କର ପ୍ରଧାନ

ପାମାସୁ ଗୁଙ୍ଗ ସାଥିରେ ଖାଆନ୍ତି । ଗୁଡ଼ଜଳ ବାହାରୁ ଆମଦାନୀ ହୁଏ । ସାଧାରଣତଃ ଏମାନେ ଭାତ ନୁଡ୍‌ଲ୍‌ସ୍ ଗହମ ପିଠା ପରିବା ଓ ମାଂସ ଖାଆନ୍ତି । ଲାଦାଖୀମାନେ ଲୁଣ ଚା ଖାଇବାକୁ ଖୁବ୍ ଭଲ ପାଆନ୍ତି । ଲହୁଣୀ ଓ ତେଲ ସେମାନେ ରନ୍ଧାରନ୍ଧିରେ ବ୍ୟବହାର କରନ୍ତି ।

ଜନ୍ମ ଓ ବିବାହ ଉତ୍ସବ ଏମାନେ ଖୁବ୍ ଜାକଜମକରେ ପାଳନ୍ତି । ମୃତାହନିଷ୍ଟୁ ମଧ୍ୟ କରନ୍ତି । ଜନ୍ମରେ ସାତଦିନ ଧରି ଭୋଜି ଭାତ ଚାଲେ । ବିବାହରେ ଖାଇବା ପିଇବା ନୃତ୍ୟଗୀତ ଓ ଅଭିନୟ ହୁଏ । ମୃତ୍ୟୁଦିନ ସେମାନେ ଭୋଜି କରନ୍ତି ।

ପରିବାର ମାତୃକେନ୍ଦ୍ରିକ । ଜଣେ ସ୍ତ୍ରୀ ବଡ଼ଭାଇକୁ ବିବାହ କରେ । ଅନ୍ୟ ଭାଇମାନଙ୍କୁ ସ୍ୱାମୀ ହିସାବରେ ଗ୍ରହଣ କରେ । ସ୍ତ୍ରୀ ସ୍ୱାମୀକୁ ଆକର୍ଷ କରେ । ଏଠି ସ୍ୱାମୀ ଅତ୍ୟାଚାରିତ । ସ୍ତ୍ରୀର ଏଠି ସ୍ୱାଧୀନତା ଲୋଡ଼ା ନାହିଁ । ବରଂ ପୁରୁଷର ସ୍ୱାଧୀନତା ଦରକାର । ଏବେ ସ୍ୱାଧୀନତା ପରେ ବହୁ-ସ୍ୱାମୀ ପ୍ରଥା ଏଠାରେ ବନ୍ଦହୋଇ ଆସୁଛି । ତା ଫଳରେ ନୂତନ ସାମାଜିକ ସମସ୍ୟା ସୃଷ୍ଟି ହେଲଣି । ବେଶ୍ୟା ବୃତ୍ତିର ଆରମ୍ଭ ହୋଇଯାଇଛି ।

‘କାର୍‌ଗିଲ୍’ ଓ ‘ଲେହ’ ଛଡ଼ା କୌଣସିଠାରେ ବିଦ୍ୟୁତ୍ ଆଲୋକ ନାହିଁ । ଆଲୁଅ ପାଇଁ ଲୋକେ କିରସିନି ବା ତେଲ ଜାଳନ୍ତି । ମଠରେ ଦିନ ରାତି ଦୀପ ଜଳେ । ଲହୁଣୀରେ ନଇଲେ ତେଲରେ । ପଞ୍ଚ ପଞ୍ଚାଣୀରେ ଠାକୁରଙ୍କ ପାଖରେ ପବିତ୍ର ଜଳରେ ଦୀପ ଜଳେ । ଆଗନ୍ତୁକଙ୍କ ପାଇଁ ଏହା ଆଶ୍ଚର୍ଯ୍ୟ । କିନ୍ତୁ ଏହା ସତ୍ୟ । ଲୋକଙ୍କ ଆଖିରେ ଏହା କୁହୁକ ଦୀପ ।

ପାହାଡ଼ ଉପରୁ ‘ମେମିଆକ୍’ ବୋଲି ଏକ ପ୍ରାକୃତିକ ଔଷଧ ମିଳେ । ଏହା ଶକ୍ତି ଆଉ ସାମର୍ଥ ପାଇଁ ଭାରି ଦରକାରୀ ।

'କାର୍‌ଗୀଲ୍' ଓ ଜନ୍‌ସକର୍' ଲୋକମାନେ ପ୍ରାୟ 'ସିଆ' ମୁସଲମାନ୍ । ଲଦାଖୀ ବୌଦ୍ଧ । ଏଠାରେ ବୌଦ୍ଧଧର୍ମକୁ ଲାମାଧର୍ମ ବୋଲି କୁହାଯାଏ । କିନ୍ତୁ ଲଦାଖୀ ବୌଦ୍ଧଧର୍ମ ଦୁଇ-ଭାଗରେ ବିଭକ୍ତ । ହଳଦିଆ ଓ ଲାଲ୍ । ଲାମାମାନଙ୍କ ସ୍ଥାନ ସମାଜରେ ଖୁବ୍ ଉଚ୍ଚରେ । ସେମାନେ ପୁରୋହିତ କାମ ଛଡ଼ା ଶିକ୍ଷକ, ଡାକ୍ତର, ଭିକ୍ଷୁ ଓ ଜ୍ୟୋତିଷ ବି ହୁଅନ୍ତି ।

ଗୋମ୍ପସ୍ ଓ ଲାମାମାନଙ୍କର ମସ୍ତକ ଲଣ୍ଡିତ । ମୁଖ୍ୟ ଲାମା ନିର୍ବାଚନ ଏକ ଜଟିଳ ବିଷୟ । ଏମାନେ ପୁନର୍ଜନ୍ମରେ ବିଶ୍ୱାସ କରନ୍ତି । ଏକ ସପ୍ତାହର ନବଜାତ ଶିଶୁପାଖରେ ମୃତ ମୁଖ୍ୟ ଲାମାଙ୍କ ଜିନିଷ, ଅନ୍ୟ ଜିନିଷ ସହିତ ମିଶାଇ ରଖାଯାଏ । ନବଜାତ ଶିଶୁ ଯଦି ମୁଖ୍ୟ ଲାମାଙ୍କ ଜିନିଷ ସ୍ପର୍ଶକରେ, ସେଇ ହିଁ ମୁଖ୍ୟ ଲାମା ବୋଲି ଧରି ନିଆଯାଏ ।

ବୌଦ୍ଧମାନଙ୍କର ନବ ବର୍ଷ ବଡ଼ପର୍ବ । ଏହା ତିନିଦିନ ଧରି ପାଳିତ ହୁଏ । ଅନେକ ଶୋଭାଯାତ୍ରା, ଘୋଡ଼ାଦୌଡ଼, ଭୋଜିଭାତ ଓ ମଦ୍ୟପାନରେ ସମୟ କଟେ । ପ୍ରତିବର୍ଷ 'ଲାମାୟୁରୁ' ଶକ୍ତି' 'ଲିକର୍' 'ଥିକ୍‌ସେ', 'ସ୍ପିତୁକ୍' 'ମାଥୋ' ଓ 'ଏସିସ୍'ରେ ବଡ଼ମେଳା ହୁଏ । ମାଥେ ମେଳାରେ ପ୍ରତିବର୍ଷ ଦୁଇଜଣ ଲାମା ଦୁଇ ତିନିମାସ ଧରି ଧ୍ୟାନମଗ୍ନ ହୋଇ ଦିବ୍ୟଚକ୍ଷୁ ଲାଭ କରନ୍ତି । ସେମାନଙ୍କର ଆଖି କଳାକନାରେ ବାନ୍ଧି ଦିଆଯାଏ । ତଥାପି ମଧ ସେମାନେ ଅନାୟାସରେ ବୁଲିଚାଲି, ଧାଁଧପଡ଼ କରିପାରନ୍ତି ।

ଲଦାଖୀମାନେ ଚିତ୍ର ବିଦ୍ୟାରେ ପାରଙ୍ଗମ । ଫଟୋଦେଖି ସେମାନେ ପୋର୍ଟ୍ରେଟ୍ ତିଆରି କରନ୍ତି । ସେମାନେ ସଙ୍ଗୀତପ୍ରିୟ । ଧର୍ମ ଅନୁଷ୍ଠାନରେ ନୃତ୍ୟ, ସଂଗୀତ, ଅଭିନୟ ପରିବେଷଣ କରନ୍ତି।

ଲଦାଖ ତୈଳଚିତ୍ର ପାଇଁ ପ୍ରସିଦ୍ଧ । ତୈଳଚିତ୍ରକୁ 'ଥାନ୍‌ଖା' କୁହାଯାଏ । ପ୍ରତି ମଠ କାନ୍ଥରେ ବାଦଲ, ସମୁଦ୍ର, ଜଙ୍ଗଲ, ଆକାଶ, ଶାକ୍ୟମୁନିଙ୍କ ଜୀବନର ବିଭିନ୍ନ ଅଧ୍ୟାୟର ଛବି ଅଙ୍କା ହୋଇଥାଏ । ଏଠାରେ ଧର୍ମଗ୍ରନ୍ଥ ସବୁ ଲେଖା ହୋଇଥାଏ । କାଠ ଖୋଦେଇ ବହୁ ପ୍ରାଚୀନ । କଳାକାଳି ଓ ହାତତିଆରି କାଗଜରେ ଏଠି ଛପାହୁଏ ।

ଶିକ୍ଷା କ୍ଷେତ୍ରରେ ଲଦାଖ ବହୁ ପଛରେ । ସରକାର ଏବେ ଏଠାରେ ସ୍କୁଲ୍ ଖୋଲୁଛନ୍ତି । ବୌଦ୍ଧଧର୍ମ ଶିକ୍ଷାପାଇଁ ଲେହରେ ଏକ ସ୍କୁଲ ଅଛି ।

ଲଦାଖ ଜାମୁ-କାଶ୍ମୀରର ଗୋଟିଏ ଜିଲ୍ଲା । ଏହାର ଦୁଇଟି ସବ୍‌ଡିଭିଜନ । କାର୍‌ଗିଲ୍ ଓ ଲେହ । କାର୍‌ଗୀଲ୍‌ରେ ଦୁଇଟି ତହସିଲ୍ । କାର୍‌ଗୀଲ୍ ଓ ଜନ୍‌ସକର୍ । ଲେହରେ ତିନୋଟି ତହସିଲ । ନୁବ୍ରା, ଲେହ ଓ ନ୍ୟାସୁଓମା । ଲେହ ସଦର ମହକୁମା । ଏଠାରେ ପୃଥିବୀର ଉଚ୍ଚତମ ମାନମନ୍ଦିର ଅଛି । ବହୁତ ହୋଟେଲ, ବଜାର ଓ ଦୋକାନ ମଧ୍ୟ ଅଛି । ବର୍ତ୍ତମାନ ଯେ କୌଣସି ଆଧୁନିକ ନଗର ସହିତ ସମକକ୍ଷ ହେବାପାଇଁ ଲେହ ଆଗେଇ ଚାଲିଛି ।

ଲେହକୁ ଯିବାପାଇଁ ତିନୋଟି ରାସ୍ତା । ପ୍ରଥମଟି ଶ୍ରୀନଗରରୁ ସବୁଦିନିଆ ରାସ୍ତା । ପୃଥିବୀରେ ଏହା ଉଚ୍ଚତମ ସଡ଼କପଥ । ଏହା ନାଁ 'ନ୍ୟାସ୍‌ନାଲ୍ ହାଇୱେ ବାଇଶି' । ଯେ କୌଣସି ମଟର ଗାଡ଼ିରେ ଏଇ ରାସ୍ତାରେ ଯାଇହେବ । ୪୮ ଘଣ୍ଟାର ବାଟ । ଦ୍ୱିତୀୟଟି କୁଲୁ ଉପତ୍ୟକାରୁ । ତୃତୀୟଟି କାର୍‌ଗୀଲ୍ ରାସ୍ତା । ଶେଷ ଦୁଇଟିରେ କେବଳ ଟ୍ରେକର୍‌ରେ ଯାଇହେବ । ଶୀତଦିନେ ବରଫ ଯୋଗୁ ରାସ୍ତା ମଧ୍ୟ ବନ୍ଦଥାଏ । ଲଦାଖରେ ରେଳ ରାସ୍ତା ନାହିଁ । ପଠାଣକୋଟ ହେଉଛି ଶେଷ ରେଲ ଷ୍ଟେସନ ।

ପ୍ରତିଦିନ ଶ୍ରୀନଗରରୁ ଲେହକୁ ଉଡ଼ାଜାହାଜ ଯାଏ । ଲୋକେ ଏଠାରେ ତିବ୍ବତୀୟ ଭାଷା କହନ୍ତି । ଶିକ୍ଷାର ମାଧ୍ୟମ ମଧ୍ୟ ତିବ୍ବତୀୟ ।

ଲଦାଖର ଇତିହାସ ଅତି ପ୍ରାଚୀନ, କିନ୍ତୁ ଅନ୍ଧକାରମୟ । ଖ୍ରୀ.ପୂ: ୪୦୦ରେ ରାଜା ସାର୍‌ଗେଲ୍ ଲଦାଖ ଓ ତିବ୍ବତ ରାଜ୍ୟ ସ୍ଥାପନ କରିଥିଲେ । ସେଇଦିନୁ ଲଦାଖର ତିବ୍ବତ ସହିତ ଘନିଷ୍ଠ ସମ୍ପର୍କ । ଚାଲିଚଳଣ, ଆଚାର ବ୍ୟବହାର, ପୋଷାକ ପରିଚ୍ଛଦ ଏବଂ କଥାବାର୍ତ୍ତା ପ୍ରାୟ ସମାନ ।

ଲଦାଖର ଇତିହାସ "ଲଡ଼ୱାଗ୍‌ସ-ରଗାଲ୍-ରବସ୍"ରେ ଲେଖାଅଛି । ଏ. ଏଚ୍ ଫ୍ରାଙ୍କୋ ୧୯୨୬ରେ ଏହାକୁ ଇଂରାଜୀରେ ଅନୁବାଦ କରିଥିଲେ । ଏଇ ରାଜ୍ୟର ରାଜା 'ଗ୍ୟାଲପୋ ରିନ୍‌ଚୀନ୍' କାଶ୍ମୀର ଦଖଲ କରିଥିଲେ । କିନ୍ତୁ ସେ ଇସ୍‌ଲାମ୍ ଧର୍ମ ଗ୍ରହଣକରି ତାଙ୍କ ନାମ 'ସୁଲତାନ୍ ସଦର ଉଦ୍ଦିନ୍' ରଖିଥିଲେ । ସେ କାଶ୍ମୀରର ପ୍ରଥମ ମୁସଲମାନ ରାଜା । 'ମିର୍ଜା ହାଇଦର ଦୌଲତ' ୧୫୩୧ରେ ଲଦାଖ ଆକ୍ରମଣ କରିଥିଲେ । ସେ ତାଙ୍କର ଆକ୍ରମଣର ବିବରଣୀ 'ତାରିଖ-ଇ-ରସିଦ୍'ରେ ବର୍ଣ୍ଣନା କରିଛନ୍ତି ।

ଷୋଡ଼ଶ ଶତାବ୍ଦୀରେ 'ନ୍ୟାମଗ୍ୟାଲ୍' ରାଜବଂଶ ଏଠାରେ ରାଜୁତି କରୁଥିଲେ । ସେଇ ବଂଶର 'ତ୍ସେଇଙ୍ଗ ନ୍ୟାମଗ୍ୟାଲ୍' ସମଗ୍ର ଲଦାଖକୁ ତାଙ୍କ ଶାସନାଧୀନ କରି ପଶ୍ଚିମ ତିବ୍ବତକୁ ଜୟ କରିଥିଲେ । ଲେହରେ ରାଜଧାନୀ ସ୍ଥାପନ କଲେ । ବାଲ୍‌ତିସ୍ଥାନ ମଧ୍ୟ ତାଙ୍କ ଅଧୀନ ଥିଲା । ସେ ବାଲ୍‌ତିସ୍ଥାନରୁ ଲଦାଖ ପର୍ଯ୍ୟନ୍ତ ରାସ୍ତା ନିର୍ମାଣ କରିଥିଲେ । ପରବର୍ତ୍ତୀ କାଳରେ ସେଇ ବଂଶର 'ସେନେଗ ନ୍ୟାମଗ୍ୟାଲ୍' ଲାସା ପର୍ଯ୍ୟନ୍ତ ଦଖଲ କରିଯାଇଥିଲେ । ଡେଲ୍‌ଡେନ୍ ନ୍ୟାମଗ୍ୟାଲ୍ ଏଇ ସାମ୍ରାଜ୍ୟ

ଅକ୍ଷୁର୍ଣ୍ଣ ରଖିଥିଲେ । ତାଙ୍କର ସମୟରେ ମୋଗଲମାନେ ଲଦାଖ ଆକ୍ରମଣ କଲେ । ସେ ମୋଗଲମାନଙ୍କର ବଶ୍ୟତା ସ୍ୱୀକାର କଲେ । ନିଦର୍ଶନ ସ୍ୱରୂପ ଲେହରେ ଏକ ମସ୍‌ଜିଦ୍ ନିର୍ମିତ ହେଲା । ତାଙ୍କ ପୁଅ ଦେଲେକ । ସେ ତାଙ୍କ ନାମ ପରିବର୍ତ୍ତନ କରି ଆକବର୍ ମହମ୍ମଦଖାଁ ରଖିଥିଲେ । ସେ ସମୟରେ କାଲମୁକ୍ ତାତର ଆକ୍ରମଣ କରିଥିଲେ । ସନ୍ଧି ଫଳରେ ଚିରଦିନ ପାଇଁ ରୁଦୋକ ପ୍ରଦେଶ ଲଦାଖରୁ ଯାଇ ତିବ୍ବତରେ ମିଶିଲା ।

ଲୋକକଥା ଲୋକମାନଙ୍କର ଜୀବନ୍ତ ସଂସ୍କୃତି । ସେମାନଙ୍କର ଚଳଣି, ସେମାନଙ୍କର ଆନ୍ତର ବ୍ୟବହାର, ଶ୍ରଦ୍ଧା, ସ୍ନେହ, ବିଶ୍ୱାସ ଓ ଅବିଶ୍ୱାସ, ନୀତି ଓ ଅନୀତି ଉପରେ ହିଁ ଲୋକକଥାଗଡ଼ି ଉଠିଥାଏ । ଏଥିରେ ପରିବେଷିତ ଲୋକକଥାଗୁଡ଼ିକରୁ ମଧ୍ୟ ଏସବୁ ଜଣା ପଡ଼ିବ ।

ଆଜି ଲଦାଖ ଉନ୍ନତି ପଥରେ ଅଗ୍ରସର ହେଉଛି, ସେକଥା ଭବିଷ୍ୟତ ବଂଶଧର କହିବେ । ସରକାର ଏରାଜ୍ୟକୁ ଶସ୍ୟଶ୍ୟାମଳା କରିବା ପାଇଁ ଆଗ୍ରହୀ ବୋଲି ଉଦ୍ୟମ ଦିଶୁଛନ୍ତି । ଅନ୍ୟସହ ସମକକ୍ଷ ହେବାପାଇଁ ଲଦାଖୀମାନେ ଆଜି ଦୃଢ଼ ପ୍ରତିଜ୍ଞ ବୋଲି କୁହାଯାଉଛି । ଲଦାଖର ପରିବର୍ତ୍ତନ ହେଉଛି ଓ ହେବ । ଆଗାମୀ ଲଦାଖର ଯେ ଅର୍ଥନୈତିକ ବିକାଶ ଘଟିବ, ଏକଥା କହିହେବ ନାହିଁ । ପରିସ୍ଥିତି ବଦଳୁଛି । ତା'ରି ସଙ୍ଗେ ଧର୍ମବିଶ୍ୱାସୀ, ମାନବପ୍ରେମୀ ଶାନ୍ତ, ସରଳ, ଭଦ୍ର, ନମ୍ର, ଉପାସକ ଲଦାଖୀ ମଧ୍ୟ ବଦଳିବାକୁ ଲାଗିଲେଣି । ଦେଶ ସ୍ୱାଧୀନ ହେଲା । ଆମେ ଆମର ଶାସନକର୍ତ୍ତା ହେଲୁ । କିନ୍ତୁ ସବୁଥିରେ ଖାପଛଡ଼ା । ଅସ୍ୱାଭାବିକ । ଅସମନ୍ୱୟ । ଦେଶର ରାଜନୈତିକ ନେତୃବୃନ୍ଦ ଏ ଦିଗରେ ଗୁରୁତର ଅନୁଧ୍ୟାନ କରିବା ଉଚିତ ।

———

# ଚତୁର ମନ୍ତ୍ରୀ

ବହୁତ ଦିନ ତଳର କଥା । ଭିଏତନାମରେ ମାର୍ପୋଷ୍ଟୋ ବୋଲି ରାଜ୍ୟଟିଏ ଥିଲା । ଗାମ୍ପୋ ଥିଲେ ସେ ରାଜ୍ୟର ରାଜା । କମ୍ ବୟସରେ ସେ ସିଂହାସନ ଆରୋହଣ କରିଥିଲେ । ପିଲାଟି ଦିନରୁ ତାଙ୍କର ଦିଗ୍‌ବିଜୟ କରିବାର ପ୍ରବଳ ଆକାଂକ୍ଷା ଥିଲା । ସେ ରାଜା ହେବା ମାତ୍ରେ, ତାଙ୍କ ସୈନ୍ୟମାନଙ୍କୁ ସୁଗଠିତ ଆଉ ସୁସଜ୍ଜିତ କରିବାରେ ଲାଗିପଡ଼ିଲେ । ତାପରେ ଏକ ସୁଦୃଢ଼ ଦୁର୍ଗ ନିର୍ମାଣରେ ମନ ଦେଲେ । ଦୁର୍ଗ ତିଆରି ପରେ ରାଜ୍ୟ ଜୟର ଲାଳସା ତାଙ୍କ ମନରେ ଜାଗି ଉଠିଲା । ଯୁଦ୍ଧରେ ସେ କେତୋଟି ପଡ଼ୋଶୀ ରାଜ୍ୟ ଦଖଲ କରିନେଲେ । କେତେକ ମଧ୍ୟ ଆପେ ଆପେ ତାଙ୍କର ବଶ୍ୟତା ସ୍ୱୀକାର କରିଗଲେ ।

ଗାମ୍ପୋଙ୍କର ସବୁ ଆଶା ପୂରଣ ହୋଇଗଲା । ସେତେବେଳକୁ ସାମ୍ରାଜ୍ୟ ତାଙ୍କର ବିଶାଳ । ସୈନ୍ୟବାହିନୀ ଅଜେୟ ଓ ଦୁର୍ଦ୍ଧର୍ଷ । ଦୁର୍ଗ ବିରାଟ ଆଉ ସୁଦୃଢ଼ । ତାଙ୍କର ତ ଆଉ ଅଭାବ କିଛି ନ ଥିଲା । ଏଥର ସେ ବିବାହ କରିବାକୁ ରାଜି । କିନ୍ତୁ କନ୍ୟାଟି ଗୋଟିଏ ଅନନ୍ୟ ସୁନ୍ଦରୀ ରାଜକୁମାରୀ ହେବା ଦରକାର ।

ଗାମ୍ପୋଙ୍କ ରାଜ୍ୟକୁ ଲାଗି ଚୀନ୍ ଦେଶ । ସେତେବେଳକୁ ତାଇଭୁଙ୍ଗ ଚୀନର ରାଜା । ସେଠାର ରାଜକେମା ଓଂସେନ୍ କୁଞ୍ଜୁ

ଅପୂର୍ବ ସୁନ୍ଦରୀ, ଏକଥା ରାଜା ଗାମ୍ପୋଙ୍କୁ ଅଛପା ନ ଥିଲା । ତେଣୁ ଗାମ୍ପୋ ଚୀନ ରାଜକୁମାରୀ ଓଂସେନ କୁଞ୍ଜୁଙ୍କୁ ବିବାହ କରିବାକୁ ଚାହୁଁଥିଲେ ।

ଗାମ୍ପୋଙ୍କ ମନ୍ତ୍ରୀଙ୍କ ନାଁ ଗାର୍ପା । ସେ ଅତ୍ୟନ୍ତ ଚତୁର । ସବୁକଥା ନେଇ ଆଣି ଥୋଇବାରେ ସେ ଧୁରନ୍ଧର ।

ଗାମ୍ପୋ ଦିନେ ଗାର୍ପାଙ୍କୁ ଡକେଇଲେ । ତାଙ୍କୁ କହିଲେ ଯେ ଚୀନ ରାଜକୁମାରୀ ଅପୂର୍ବ ସୁନ୍ଦରୀ । ସେ ତାଙ୍କୁ ବିବାହ କରିବାକୁ ଚାହାନ୍ତି । ତେଣୁ ତାଙ୍କୁ ଚୀନ ଯାଇ ସେଠାର ରାଜାଙ୍କ ସାଥିରେ ବନ୍ଧୁତ୍ୱ ସ୍ଥାପନ କରିବାକୁ ହେବ । ତାଙ୍କୁ ଏଇ ବିବାହ ପ୍ରସ୍ତାବରେ ଯେ କୌଣସି ପ୍ରକାରେ ରାଜି କରାଇବାକୁ ହେବ ।

ଗାର୍ପା ଘରକୁ ଫେରି ତାଙ୍କର ଚୀନଯାତ୍ରା ପାଇଁ ଶୁଭ ଦିନଟିଏ ସ୍ଥିର କଲେ । ବିବାହ ପ୍ରସ୍ତାବ ପକାଇ ରାଜି କରିବାକୁ ହେଲେ ନିଜର ପ୍ରତିଷ୍ଠା, ଚାଲିଚଳନ, ରଙ୍ଗ ଢଙ୍ଗ, ଆଉ ଦବାନବାରେ ଅନ୍ୟ ପକ୍ଷର ମନ କିଣିବାକୁ ହୁଏ । ସେଥିପାଇଁ ଗାର୍ପା ନିଜକୁ ପ୍ରସ୍ତୁତ କରିନେଲେ । ଚୀନ ରାଜାଙ୍କ ପାଇଁ ମନଲୋଭା ଉପହାର ସଂଗ୍ରହ ଚାଲିଲା । ନିଜେ ରାଜା ଗାମ୍ପୋ ଚୀନ ରାଜାଙ୍କ ପାଇଁ କିଛି ଉପହାର ଦେଲେ । ସେ ସବୁ ଅମୂଲ୍ୟ । ଦୁଷ୍ପ୍ରାପ୍ୟ । ତାଛଡ଼ା ରାଜଜେମାଙ୍କ ପାଇଁ ହୀରା ମୁଦିଟିଏ ଦେଇଥିଲେ । ସବୁ ଜିନିଷ ଚମରି ଗାଈ ଆଉ ଘୋଡ଼ା ଉପରେ ନଦା ହେଲା । ଚୀନ ମାର୍ପୋଲାଠାରୁ ବହୁତ ଦୂର । ରାସ୍ତା ବଡ଼ ବିପଦ ସଂକୁଳ । ଡକାୟତି ବି ହୁଏ । ସେଥିପାଇଁ ଗୋଟିଏ ସୈନ୍ୟଦଳକୁ ମଧ୍ୟ ଗାର୍ପା ସାଥିରେ ନେଇ ଯାଉଥିଲେ ।

ଗାର୍ପାଙ୍କ ପାଇଁ ପାଲିଙ୍କିଟିଏ ସୁସଜ୍ଜିତ ହେଲା । ପାଲିଙ୍କିଟି ଗୋଲାପ କାଠରେ ତିଆରି । ସେଥିରେ ବିଭିନ୍ନ ରଙ୍ଗର ମଖମଲ

ପରଦା ଝୁଲୁଥାଏ । ଗାର୍ପୋ ନିଜେ ଅତି ମୂଲ୍ୟବାନ୍ ରେଶମ ପୋଷାକ ପିନ୍ଧିଥାଆନ୍ତି । ସେ ପ୍ରଥମେ ଇଷ୍ଟଦେବତାଙ୍କୁ ସ୍ମରଣକରି ଯାତ୍ରାର ସଫଳତା ପାଇଁ ପ୍ରାର୍ଥନା କଲେ । ତାପରେ ସମସ୍ତଙ୍କଠାରୁ ବିଦାୟନେଇ ଆସି ପାଲିଙ୍କିରେ ବସିଲେ । ଶୁଭବେଳାରେ ଯାତ୍ରା ଆରମ୍ଭ ହେଲା ।

ବାଟରେ କିଛି ଅଘଟଣ ଘଟିଲା ନାହିଁ । ସୁରୁଖୁରୁରେ ସେମାନେ ଚୀନ ରାଜ୍ୟର ସୀମାରେ ପହଞ୍ଚିଗଲେ । ସେ ରାଜାଙ୍କ ଅନୁମତି ନ ନେଇ ତାଙ୍କ ରାଜ୍ୟରେ ପଶିବା ଅସୌଜନ୍ୟ ହେବ । ତେଣୁ ସେଠାରେ ସେ ତମ୍ବୁ ପକାଇଲେ । ସେଠାରୁ ତାଙ୍କ ଦୂତକୁ ଚୀନ ରାଜାଙ୍କ ନିକଟକୁ ପଠାଇଲେ । ରାଜଦୂତଟି ଘୋଡ଼ା ଝିପଟାଇ ଚୀନ ରାଜଧାନୀରେ ପହଞ୍ଚିଗଲା । ରାଜାଙ୍କୁ ଦେଖା କରିବାକୁ ତାର କିଛି ଅସୁବିଧା ହେଲନାହିଁ । ରାଜାଙ୍କୁ ଭେଟି ସେ ନିଜର ପରିଚୟ ଦେଇ କହିଲା—"ମୁଁ ମାର୍ପୋଗାର ରାଜଦୂତ । ଆମର ରାଜା ଗାମ୍ପୋ ଅତି ନ୍ୟାୟବାନ୍, ପ୍ରଜାବତ୍ସଳ, ସୁଶାସକ ଏବଂ ପ୍ରଖ୍ୟାତ ଯୋଦ୍ଧା । ତାଙ୍କୁ ସମସ୍ତେ ଡରନ୍ତି । ଏମିତିକି, ପଡ଼ିଆରେ ଉଠିଥିବା ଘାସ ମଧ୍ୟ ଉପରେ ରାଜାଙ୍କ ଦୁର୍ଗଆଡ଼କୁ ନଇଁଥାଏ । ତୁମ୍ଭଙ୍କ ସାଥିରେ ବନ୍ଧୁତା କରିବାପାଇଁ ଆମ ରାଜାଙ୍କର ଖୁବ ଇଚ୍ଛା । ସେ ସେଥିପାଇଁ ମନ୍ତ୍ରୀ ଗାର୍ପୋଙ୍କୁ ତୁମ୍ଭଙ୍କ ନିକଟକୁ ପଠାଇଛନ୍ତି । ତା ଛଡ଼ା ଆମରାଜା ମଧ୍ୟ ରାଜଜେମାଙ୍କର ପାଣି ଗ୍ରହଣ କରିବାକୁ ଚାହାନ୍ତି । ମନ୍ତ୍ରୀ ଗାର୍ପୋ ତୁମ୍ଭଙ୍କ ରାଜ୍ୟ ସୀମାରେ ଅପେକ୍ଷା କରିଛନ୍ତି । ଆଦେଶ ହେଲେ, ଆମମନ୍ତ୍ରୀ ତୁମ୍ଭଙ୍କୁ ଭେଟିବେ ।"

ଝିଅର ବିବାହ ପ୍ରସ୍ତାବ ଶୁଣି ରାଜା ଗମ୍ଭୀର ହୋଇଗଲେ । ରାଜା ଝିଅଟିକୁ ଖୁବ ଭଲ ପାଆନ୍ତି । ସେ ଖୁବ ଅଲଅଳୀ ।

ସୁକୁମାଣ୍ଡ । ଏତେ ଦୂରକୁ ଯାଇ ତା ପକ୍ଷେ ଚଳିବା ଅସମ୍ଭବ । ସେଥିପାଇଁ ଝିଅକୁ ଗାମ୍ପୋଙ୍କ ସହ ବିବାହ ଦେବାକୁ ରାଜାଙ୍କର ଜମା ଇଚ୍ଛା ହେଉ ନାହିଁ । କିନ୍ତୁ ଗାମ୍ପୋ ନିର୍ଭୀକ, ସାହସୀ । ମହାପରାକ୍ରମୀ ଆଉ ଅଟଳ । ତା ଛଡ଼ା ତାଙ୍କର ସୈନ୍ୟ ଅଜସ୍ର । ଏ ବିବାହ ପ୍ରସ୍ତାବରେ ସେ ରାଜି ନ ହେଲେ ଗାମ୍ପୋଙ୍କର ଆକ୍ରମଣରୁ ତାଙ୍କର ଆଉ ରକ୍ଷା ନାହିଁ । ହୁଏତ, ବଳପୂର୍ବକ ସେମାନେ ରାଜାଜେମାଙ୍କୁ ନେଇଯାଇ ପାରନ୍ତି । ଏଇ ଭୟରେ ସିଧା ସଳଖ ନାହିଁ କରିବାର ସାହସ ତାଙ୍କର ନ ଥିଲା । ସେ ଭାବୁଥିଲେ—ଅନ୍ୟ ବାଟ ତାଙ୍କୁ ଧରିବାକୁ ହେବ । ତା ଛଡ଼ା ତାଙ୍କର ଅନ୍ୟଗତି ନାହିଁ । ମନକଥା ମନରେ ରଖି ସେ ନିଜ ମନ୍ତ୍ରୀଙ୍କୁ ଡକାଇଲେ । ଶୀଘ୍ର ଯାଇ ଗାର୍ପୋଙ୍କର ମନ୍ତ୍ରୀଙ୍କୁ ସାଦରେ ପାଖେଇ ଆଣିବାକୁ ଆଦେଶ ଦେଲେ ।

ପରଦିନ ସଦଳବଳେ ଗାର୍ପୋ ଦରବାରକୁ ଆସିଲେ । ସେ ଚୀନ୍ ରାଜାଙ୍କୁ ସାଦର ଅଭ୍ୟର୍ଥନା ଜଣେଇଲେ । ସାଥିରେ ଆଣିଥିଲେ, ଅସଂଖ୍ୟ ଉପହାର । ରାଜା ତାଇତୁଙ୍ଗ୍‌ଙ୍କୁ ସେଗୁଡ଼ିକୁ ଭେଟି ଦେଲେ । ଏଇ ଦୁଷ୍ପ୍ରାପ୍ୟ ଏବଂ ମୂଲ୍ୟବାନ୍ ଉପହାରଗୁଡ଼ିକୁ ଦେଖି ଚୀନ୍‌ରାଜା ଅତ୍ୟନ୍ତ ଖୁସି ହେଲେ ।

ଅଭ୍ୟର୍ଥନା ସରିଲା । କିଛି ସମୟ ଆଳାପ ପରେ ରାଜା ତାଇ-ତୁଙ୍ଗ୍ କହିଲେ—"ମୁଁ ଦୂତଠାରୁ ସବୁ ଖବର ପାଇଛି । ପରାକ୍ରମ-ଶାଳୀ ରାଜା ଗାମ୍ପୋଙ୍କୁ ନିଜର ଜ୍ୱାଇଁ ଭାବରେ ପାଇଲେ ମୁଁ ଗର୍ବିତ ହେବି । ତାଙ୍କ ସାଥିରେ ବନ୍ଧୁତା କରିପାରିଲେ, ମୋର ସମ୍ମାନ ବଢ଼ିଯିବ । କିନ୍ତୁ ବିବାହ ସମ୍ପର୍କରେ ଆମର କୌଳିକ ପ୍ରଥା ଅଛି । ତାକୁ ମୋତେ ମାନିବାକୁ ହେବ । ସେଇ ପ୍ରଥା

ଅନୁଯାୟୀ ବିବାହ ଆଗ୍ରହୀ ରାଜକୁମାରଙ୍କୁ ଗୁରେଟି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ହେବ । ନଚେତ୍ ବିବାହ ହୋଇପାରିବ ନାହିଁ ।"

ଗାର୍ଗୀ କାଳବିଳମ୍ବ ନ କରି କହିଲେ—"ମୋ ରାଜାଙ୍କ ପାଇଁ କୌଣସି ପରୀକ୍ଷା କଠିନ ହୋଇ ନ ପାରେ । କିନ୍ତୁ ପରୀକ୍ଷା ଦେବାକୁ ସେ ତ ଏକୁଟିଆ ଆସିବେ ନାହିଁ । ସାଥିରେ ଆସିବେ ତାଙ୍କର ବିରାଟ ସୈନ୍ୟବାହିନୀ ।"

ଗାର୍ଗୀଙ୍କ ସୈନ୍ୟବାହିନୀକୁ ରାଜା ତାଇଙ୍ଗୁଙ୍କର ଭାରି ଭୟ । ସୈନ୍ୟବାହିନୀ ଆସିବା କଥା ଉଠିବାରୁ ସେ ଡରିଗଲେ । ସେ ସାଙ୍ଗେ ସାଙ୍ଗେ କହିଲେ—"ତମ ରାଜାଙ୍କର ଏଠାକୁ ଆସିବା ଦରକାର ନାହିଁ । ତମେ ତ ତାଙ୍କର ପ୍ରତିନିଧି । ରାଜାଙ୍କ ପରିବର୍ତ୍ତେ ତମେ ମଧ୍ୟ ସେ ପରୀକ୍ଷା ଦେଇପାର । କିନ୍ତୁ ଏତିକି ସର୍ତ୍ତ ରହିବ ଯେ ତମେ ଅକୃତକାର୍ଯ୍ୟ ହେଲେ ରାଜାଙ୍କର ବିବାହ କରିବାର ପ୍ରଶ୍ନ ଉଠିବ ନାହିଁ ।"

ଏ ପ୍ରସ୍ତାବରେ ଗାର୍ଗୀଙ୍କର ଆପତ୍ତି ନ ଥିଲା । ତେଣୁ ଗାର୍ଗୀଙ୍କର ପରୀକ୍ଷା ଦେବାର ସ୍ଥିର ହେଲା ।

ପରଦିନ ପରୀକ୍ଷା ସ୍ଥାନରେ ପ୍ରବଳ ଜନଗହଳି । ପ୍ରଶ୍ନଟି ଜାଣିବା ପାଇଁ ଲୋକମାନେ ଉତ୍କଣ୍ଠିତ ।

ପରୀକ୍ଷାର ବେଳ ହୋଇଗଲା । ଢେଙ୍ଗୁରା ସାହାଯ୍ୟରେ ପ୍ରଶ୍ନଟି ଘୋଷଣା କରାଗଲା—"କାନ୍ଥର ଏପଟେ ଶହେ ଘୋଡ଼ାଛୁଆ ରହିଛନ୍ତି । କାନ୍ଥର ଆରପଟେ ସେମାନଙ୍କର ମା'ମାନେ ଅଛନ୍ତି । କାନ୍ଥ ଭଙ୍ଗାହେବ ନାହିଁ କି ଘୋଡ଼ା ବା ଘୋଡ଼ାଛୁଆକୁ କାନ୍ଥ ଆରପଟେ ବୁଲେଇ ଅଣାଯିବ ନାହିଁ କି କାନ୍ଥ ଡିଆଇଁ ନିଆଯିବ

ନାହିଁ । କିନ୍ତୁ ପ୍ରତି ଘୋଡ଼ାଛୁଆକୁ ତା ମା ସାଥିରେ ମନ୍ତ୍ରୀ-ମହାଶୟଙ୍କୁ ମିଳେଇବାକୁ ହେବ ।’’

ଗାର୍ପା ତ ଖୁବ ଗ୍ଚନକ । ସେ କାନ୍ଥ ପାଖକୁ ଗଲେ । ତନ୍ନ ତନ୍ନ କରି କାନ୍ଥକୁ ପରୀକ୍ଷଣ କଲେ । ସେଥିରେ ଗୋଟିଏ ଗୁପ୍ତ କବାଟ ଥିବାର ସେ ଲକ୍ଷ୍ୟ କଲେ । ସେଠାକୁ ଯାଇ ଗୋଡ଼ରେ କବାଟଟିକୁ ଠେଲି ଖୋଲି ଦେଲେ । କବାଟ ମେଲା ହୋଇଗଲା । ଛୁଆଗୁଡ଼ିକ ସେଇବାଟେ କଲବଲ ହୋଇ ସେମାନଙ୍କ ମା’ମାନଙ୍କ ପାଖକୁ ଦୌଡ଼ିଲେ । ଜନଗହଳି ଭିତରୁ ଆନନ୍ଦଧ୍ୱନି ଶୁଣାଗଲା ।

ଏ ପରୀକ୍ଷାକୁ ଚୀନମାନେ ବିଶେଷ ଗୁରୁତ୍ୱ ଦେଲେ ନାହିଁ । କାରଣ, ଗାର୍ପା ଯେ ଅନ୍ୟ ପରୀକ୍ଷାଗୁଡ଼ିକରେ ଅକୃତକାର୍ଯ୍ୟ ହେବେ, ସେ ବିଷୟରେ ସେମାନେ ନିଃସନ୍ଦେହ ଥିଲେ ।

ସହରର ଏକ ବିରାଟ ପ୍ରାସାଦ ଥିଲା । ସେଥିରେ ଶହେଟି କୋଠରୀ । ପ୍ରତ୍ୟେକ କୋଠରୀ ଏକାପରି । ତାରତମ୍ୟ କିଛି ନାହିଁ । ସେଇଦିନ ରାତିରେ ଗାର୍ପାଙ୍କୁ ସେଥିରୁ ଗୋଟିଏ କୋଠରୀକୁ ନିଆଗଲା । ସେଠାରେ ରାତି କଟାଇଲେ । ଅନ୍ଧାର ଥାଉ ଥାଉ ସେଠାରୁ ତାଙ୍କୁ ଆଣି ପୁଣି ତାଙ୍କ ରହିବା ଯାଗାରେ ଛାଡ଼ି ଦିଆଗଲା ।

ତା’ ପରଦିନ ହିଁ ଶେଷ ପରୀକ୍ଷା । ଗତ ରାତିରେ ମନ୍ତ୍ରୀ-ମହାଶୟ ଯେଉଁ ବଖରାଟିରେ ଶୋଇଥିଲେ, ସେହି ବଖରାଟିକୁ ଚିହ୍ନଟ କରିବା ପାଇଁ ତାଙ୍କୁ କୁହାଗଲା ।

ଗାର୍ପା ତ ଅତି ଚତୁର । ତାଙ୍କୁ ସେଇ ବିରାଟ ପ୍ରାସାଦକୁ ନିଆଗଲାବେଳେ ସେ ତାଙ୍କ ଦେଶର ସୁଗନ୍ଧିତ ଧୂପକାଠି ତାଙ୍କ ସାଥିରେ ନେଇ ଯାଇଥିଲେ । ପାହାନ୍ତିଆରେ ସେ ବଖରାରୁ

ଆସିବାବେଳେ ସେଇ ଧୂପକାଠିରୁ ଗୋଟିଏ ଜଳେଇ ଘରକଣରେ ରଖିଦେଇ ଆସିଥିଲେ । ଧୂପକାଠି ଧୂଆଁରେ ସେ ଘର ମହ ମହ ହୋଇ ବାସୁଥାଏ । ସକାଳେ ଯେତେବେଳେ ତାଙ୍କୁ ବଖରା ଚିହ୍ନଟ କରିବାକୁ କୁହାଗଲା, ସେ ବାସନା ବାହାରୁଥିବା କୋଠରୀଟିକୁ ଅକ୍ଳେଶରେ ଜାଣିପାରିଲେ । ସେଇ ବଖରାଟିକୁ ସେ ଚିହ୍ନାଇ ଦେଲେ । ଏହିପରି ଦ୍ୱିତୀୟ ପରୀକ୍ଷାରେ ମଧ୍ୟ ଗାର୍ଗୀ ଉତ୍ତୀର୍ଣ୍ଣ ହୋଇଗଲେ ।

ଗାର୍ଗୀଙ୍କର ଏଥର କଠିନ ତୃତୀୟ ପରୀକ୍ଷା । ମାଳଟିଏ ଗୁନ୍ଥିବାପାଇଁ ତାଙ୍କୁ କିଛି ପୋହଳା ଦିଆଗଲା । ଘୋଷଣା କରାଗଲା ଯେ ପୋହଳାରେ ନୂଆ କଣା ହେବ ନାହିଁ । କିନ୍ତୁ ମାଳାଟି ଗୁନ୍ଥିବାକୁ ହେବ । ଗାର୍ଗୀ ପୋହଳାଗୁଡ଼ିକୁ ପରୀକ୍ଷା କଲେ । ସେ ଦେଖିଲେ ଯେ ପୋହଳାର କଣାଗୁଡ଼ିକ ବଙ୍କାଟଙ୍କା । ଖାଲି ସ୍ଲେଟ ବା ଛୁଞ୍ଚ ଏଥିରେ ଯାଇପାରିବ ନାହିଁ । ଗାର୍ଗୀ ମହା ଅଡୁଆରେ ପଡ଼ିଲେ । ଏଥର ସେ ଟିକିଏ ଡରିଗଲେ । ପରୀକ୍ଷାରେ କୃତକାର୍ଯ୍ୟ ନ ହେଲେ, ତାଙ୍କର ଚୀନ୍ ଆସିବା ବୃଥା ହୋଇଯିବ । ଏ ବିଷୟରେ ସେ ସଚେତନ ଥିଲେ ।

ଗାର୍ଗୀ ଏକୁଟିଆ ବସିଥାଆନ୍ତି । ସମ୍ମୁଖରେ ଗୁନ୍ଥାହେବାକୁ ଥିବା ପୋହଳାସବୁ ଥୁଆ ହୋଇଥାଏ । ସେ ଗମ୍ଭୀର ଭାବରେ ଚିନ୍ତା କରୁଥାଆନ୍ତି । ହଠାତ୍ ବସିଥିବା ଘର କଣରେ ସେ ପିମ୍ପୁଡ଼ି ଧାଡ଼ିଟିଏ ଦେଖିଲେ । ତାଙ୍କ ମନରେ ଆଶାର ସଞ୍ଚାର ହେଲା । ତାଙ୍କ ଓଠରେ ଫୁଟିଉଠିଲା ମୃଦୁ ହସ ।

ଗାର୍ଗୀ ପିମ୍ପୁଡ଼ିଧାଡ଼ି ନିକଟକୁ ଆଗେଇଲେ । ଆସ୍ତେକରି ଗୋଟିଏ ପିମ୍ପୁଡ଼ିକୁ ଧରି ସେ ଉଠେଇ ନେଇ ତା ଗୋଡ଼ରେ ସରୁ ସୂତାଟିଏ ବାନ୍ଧିଦେଲେ । କଣାକୁ କଣା ଯୋଡ଼ିକରି ପୋହଳା-

ଗୁଡ଼ିକୁ ସେ ଧାଡ଼ିକରି ରଖିଦେଲେ । ସେ ଅତ୍ୟନ୍ତ ଧୈର୍ଯ୍ୟ ଓ ସାବଧାନତା ସହକାରେ ପିମ୍ପୁଡ଼ିଟିକୁ ପ୍ରଥମ ପୋହଳା ଭିତରେ ଭର୍ତ୍ତି କରିଦେଲେ ।

ପୋହଳାଯାକ ତ କଣାକୁ କଣା ଲଗାଲଗି ହୋଇ ଥିଆ-ହୋଇଥିଲା । ପିମ୍ପୁଡ଼ିଟି ସହଜରେ ଗୋଟିକ ପରେ ଗୋଟିଏ ପୋହଳା ଭିତରଦେଇ ଶେଷ ପୋହଳା ଭିତରୁ ପଦାକୁ ବାହାରି ଆସିଲା । ଗାର୍ପା ଜାକୁ ଜଗିଥାନ୍ତି । ପିମ୍ପୁଡ଼ିଟି ବାହାରି ଆସିବାମାତ୍ରେ ସେ ସୂତାଟିକୁ ତା ଗୋଡ଼ରୁ ଛଡ଼ାଇ ଦେଲେ । ଏଥରକ ପୋହଳାଗୁଡ଼ିକ ଗୁନ୍ଥା ହୋଇଗଲା । ତାକୁ ଧରି ଗାର୍ପା ରାଜାଙ୍କ ପାଖକୁ ଗଲେ ।

ମାଳଟିକୁ ପାଇ ରାଜା ମନେ ମନେ ଗାର୍ପାଙ୍କୁ ପ୍ରଶଂସା ନ କରି ରହିପାରିଲେ ନାହିଁ ।

ଏଥରକ ଶେଷ ପରୀକ୍ଷା । ଗାର୍ପା ଏଥିରେ କୃତକାର୍ଯ୍ୟ ହେଲେ, ତାଙ୍କ ଦାୟିତ୍ୱ ସରିବ । ଚୀନ ରାଜକୁମାରୀ ତାଙ୍କ ଦେଶର ରାଣୀ ହୋଇଯିବେ ।

କିନ୍ତୁ ଏହାଥିଲା ସବୁଠାରୁ କଠିନ ପରୀକ୍ଷା । ଏଥିରେ କୃତକାର୍ଯ୍ୟ ହେବା ସହଜ ନୁହେଁ ।

ପ୍ରଶ୍ନଟି ଘୋଷଣା କରାଗଲା । ରାଜଦରବାରରେ ରାଜକୁମାରୀ ଓଙ୍ଗ୍‌ସେନ୍ କୁଞ୍ଜୁଙ୍କ ସହିତ ଶହେଜଣ ସୁନ୍ଦରୀ ଝିଅ ଧାଡ଼ିବାନ୍ଧି ଠିଆ ହେବେ । ତନ୍ମଧ୍ୟରୁ ରାଜକୁମାରୀଙ୍କୁ ମନ୍ତ୍ରୀ ଚିହ୍ନଟ କରିବେ ।

ରାଜକୁମାରୀ କୁଞ୍ଜୁଙ୍କୁ ଏପର୍ଯ୍ୟନ୍ତ ଗାର୍ପା ଦେଖିନଥାନ୍ତି । ତାଙ୍କୁ କେମିତି ଚିହ୍ନିବେ, ତାହାହିଁ ହେଲା ତାଙ୍କର ଚିନ୍ତାର ବିଷୟ ।

ଗାର୍ପାଙ୍କର ବୁଦ୍ଧି ବଣା ହୋଇ ଯାଉଥାଏ । ନିଜ ଜୀବନ ବିନିମୟରେ ରାଜାଙ୍କର ସମ୍ମାନ ବଜାୟ ରଖିବାକୁ ସେ ପ୍ରସ୍ତୁତ

କିନ୍ତୁ, କ'ଣ ତାଙ୍କୁ କରିବାକୁ ହେବ ସେ ଜାଣି ପାରୁ ନ ଥିଲେ, ସେଥିପାଇଁ ସେ ତାଙ୍କ ଘରଟିରେ ବସି ଉପାୟ ଚିନ୍ତା କରୁଥାଆନ୍ତି ।

ସବୁଦିନପରି ତାଙ୍କ ଘର ଓଳେଇବାପାଇଁ ଚାକରାଣୀଟି ଆସିଲା । ହଠାତ୍ ଗାର୍ଗୀଙ୍କ ମୁଣ୍ଡରେ ଗୋଟିଏ ବୁଦ୍ଧି ଉଙ୍କିଲା । ସେ ଚାକରାଣୀଟିକୁ ପାଖକୁ ଡାକିଲେ । ତାଙ୍କୁ ମଣିମାଣିକ୍ୟଖଚିତ ସୁନ୍ଦର ମୁଦିଟିଏ ଉପହାର ଦେଲେ । ଚାକରାଣୀଟି ମୁଦିଟି ପାଇ ଭାରି ଖୁସି । ସଂକୋଚ ତାର କମିଗଲା । ଆଳାପ ମଧ୍ୟରେ ଗାର୍ଗୀ ତାଠାରୁ ରାଜକୁମାରୀଙ୍କର ବିଷୟ ସବୁ ବୁଝିଲେ । ତାପରେ ଜେମାଙ୍କୁ କିପରି ଚିହ୍ନି ହେବ, ତାର ଉପାୟ ପଚାରିଲେ ।

ଚାକରାଣୀଟି ପ୍ରଥମେ ଡରିଗଲା । କହିବାପାଇଁ ତାର ଇଚ୍ଛା ନ ଥିଲା । ଉପାୟ ନ ବତାଇଲେ, କାଳେ ମୁଦିଟିକୁ ତାକୁ ଫେରାଇବାକୁ ହେବ, ସେଇ ଭୟରେ ଜେମାଙ୍କୁ ଚିହ୍ନିବାର ବାଟ ବତାଇବାକୁ ସେ ସ୍ଥିର କଲା ।

ସେ କହିଲା—"କାଲି ଆମ ରାଜ୍ୟରେ ବହୁତ ବହୁତ ସୁନ୍ଦରୀ ଝିଅମାନେ ରାଜକୁମାରୀଙ୍କ ସହିତ ଧାଡ଼ିବାନ୍ଧି ଠିଆ ହେବେ । ସେମାନେ ସମସ୍ତେ ସୁନ୍ଦର ସୁନ୍ଦର ଫୁଲ ତାଙ୍କ ମୁଣ୍ଡରେ ଖୋଷିବେ । ହେଲେ—ସେଗୁଡ଼ିକ ପ୍ରକୃତ ଫୁଲ ନୁହେଁ, ସେ ସବୁ କାଗଜଫୁଲ । ଆମ ଜେମା ତ ଆଉ କାଗଜଫୁଲ ଖୋଷିବେ ନାହିଁ । ତାଙ୍କ ଖୋଷାରେ ସଦ୍ୟଫୁଟନ୍ତା ଫୁଲ ଥିବ । ତମ ଦେଶରେ ତ ଫୁଲ ଫୁଟେନାହିଁ । ତେଣୁ ତୁମେ କାଗଜଫୁଲ ଓ ଫୁଟନ୍ତା ଫୁଲର ପ୍ରଭେଦ ଜାଣିପାରିବ ନାହିଁ । ଫଳରେ ଜେମାଙ୍କୁ ତମେ ଚିହ୍ନିପାରିବ ନାହିଁ ।

ସବୁକଥା ଶୁଣି ଗାର୍ଗୀ ଚୁପ୍ ରହିଲେ ।

ପରଦିନ ଦରବାର ଲୋକାରଣ୍ୟ । ରାଜ୍ୟର ବହୁତ ବହୁତ ସୁନ୍ଦରୀ ଝିଅମାନେ ଧାଡ଼ିବାନ୍ଧି ଠିଆ ହୋଇଥାନ୍ତି । ଜଣେ ଆରଜଣକଠାରୁ

ଅତୁଳ ସୁନ୍ଦର । ଯାହାକୁ ଅନେଇବ, ଆଖି ଅଟକି ଯିବ । ସମସ୍ତେ ଗୋଟିଏ ପ୍ରକାରର ମୂଲ୍ୟବାନ୍ ପୋଷାକ ପିନ୍ଧିଥାଆନ୍ତି । ପୋଷାକସବୁ ଖାଲି ଝଲମଲ ହେଉଥାଏ । ସମସ୍ତେ ବି ମୁଣ୍ଡରେ ଏକାପ୍ରକାର ଫୁଲ ଲଗାଇଥାନ୍ତି । ସମସ୍ତଙ୍କର ମୁଣ୍ଡବନ୍ଧା ମଧ୍ୟ ସମାନ ।

ଗାର୍ପା ଝିଅମାନଙ୍କର ଧାଡ଼ିକୁ ଅନେଇ ଦ୍ୱନ୍ଦ୍ୱରେ ପଡ଼ିଗଲେ । ମନଫିକା ପଡ଼ିଗଲା । ସୌନ୍ଦର୍ଯ୍ୟ, ପୋଷାକ ଓ ସାଜସଜ୍ଜାରେ ତ କେହି କାହାକୁ ଊଣା ନୁହଁନ୍ତି । ତେଣୁ ରାଜକୁମାରୀଙ୍କୁ ଚିହ୍ନିବା ମୁସ୍କିଲ । ଏଥର ପରୀକ୍ଷାରେ ଅକୃତକାର୍ଯ୍ୟ ହେବା ଅନିବାର୍ଯ୍ୟ ବୋଲି ସେ ନିଶ୍ଚିତ ହୋଇଗଲେ ।

ସମସ୍ତଙ୍କର ଦୃଷ୍ଟି ଗାର୍ପାଙ୍କ ଉପରେ । କିନ୍ତୁ ତାଙ୍କର ଦୃଷ୍ଟି କେବଳ ସେହି ଝିଅମାନଙ୍କ ମୁଣ୍ଡରେ ସଜା ହୋଇଥିବା ଫୁଲ ଉପରେ । ସେ ଅତ୍ୟନ୍ତ ସାବଧାନତା ସହକାରେ ପ୍ରତ୍ୟେକଙ୍କ ମୁଣ୍ଡକୁ ନିରୀକ୍ଷଣ କରୁଥାଆନ୍ତି ।

ଗାର୍ପା ତ ଆଗରୁ ସବୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଗଲେ, ରାଜକୁମାରୀଙ୍କର ଗାର୍ପାଙ୍କ ସହ ବିବାହ ସୁନିଶ୍ଚିତ । ସେଥିପାଇଁ ରଜା ଚାଇଭୁଙ୍ଗ ବିବ୍ରତଥିଲେ, କିନ୍ତୁ ଗାର୍ପାଙ୍କୁ ବିଚଳିତ ଦେଖି ରାଜା ଆଶ୍ୱସ୍ତ ହେଲେ ।

ଗାର୍ପା ଏଥରକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବେ ନାହିଁ କି ତାଙ୍କ ଟେଙ୍କାଝିଅକୁ ଆଉ ଦୂରକୁ ଯିବାକୁ ପଡ଼ିବ ନାହିଁ । ଏ ବିଷୟରେ ସେ ଦୃଢ଼ ହୋଇଗଲେ ।

ଗାର୍ପା ସ୍ଥାଣୁଭଳି ଗୋଟିଏ ସ୍ଥାନରେ ଠିଆ ହୋଇଥାଆନ୍ତି, ଦୃଷ୍ଟି ତାଙ୍କର ସୁନ୍ଦରୀମାନଙ୍କ ମୁଣ୍ଡରେ ଥିବା ଫୁଲ ତୋଡ଼ା

ଉପରେ ! ହଠାତ୍ ଗୋଟିଏ ମହୁମାଛି କାହୁଁ ଉଡ଼ିଆସିଲା । ସେ ଝିଅମାନଙ୍କ ଧାଡ଼ି ନିକଟକୁ ଗଲା ।

ଗାର୍ପାଙ୍କ ଓଠରେ ଫୁଟିଉଠିଲା ମୃଦୁହସ । ଆଖିରେ ଅପୂର୍ବ ଜ୍ୟୋତି । ମହୁମାଛିଟି ଉପରେ ତାଙ୍କର ଆଖି ଲାଗି ରହିଲା । ମହୁମାଛି ଉଡ଼ି ଉଡ଼ି ଯାଇ ଗୋଟିଏ ଝିଅର ମୁଣ୍ଡ ଉପରେ ଥିବା ଫୁଲ ତୋଡ଼ା ଉପରେ ବସିପଡ଼ିଲା ।

ଗାର୍ପା କାଳବିଳମ୍ବ ନ କରି ସେହି ଝିଅ ପାଖକୁ ଦୌଡ଼ିଗଲେ । ତାଙ୍କ ନିକଟରେ ନଇଁପଡ଼ି ହାତଯୋଡ଼ି ନମ୍ରଭାବରେ ଗାର୍ପା କହିଲେ—"ମାର୍ପୋରୀର ଭାବରାଣୀଙ୍କୁ ମୁଁ ସସମ୍ମାନେ ଅଭ୍ୟର୍ଥନା କରୁଅଛି । ଆମରାଜା ଗମ୍ପୋଙ୍କର ପ୍ରେରିତ ଉପହାର ଏଇ ହୀରାମୁଦିକୁ ସାଦରେ ଗ୍ରହଣ କରନ୍ତୁ ।"

ଦରବାରରେ ଆନନ୍ଦର କୋଳାହଳ । ଘନ ଘନ କରତାଳିରେ କାନ ଅତଡ଼ା ପଡ଼ୁଥାଏ ।

ଝିଅଟି ଦୂରକୁ ଚାଲିଯିବ ବୋଲି ରାଜାଙ୍କ ମନରେ ଯିବା ଦୁଃଖ ହେଉଥାଏ, କିନ୍ତୁ ପରାକ୍ରମଶାଳୀ ପ୍ରସିଦ୍ଧ ରାଜା ଗମ୍ପୋଙ୍କୁ ନିଜର ଜାମାତା କରିପାରିଲେ ବୋଲି ତାଙ୍କ ଛାତି ଫୁଲି ଉଠୁଥାଏ ।

ଗାର୍ପାଙ୍କର ପରୀକ୍ଷା ସରିଲା । ସେ ରାଜ୍ୟକୁ ମହାଆନନ୍ଦରେ ବାହୁଡ଼ିଲେ ।

ରାଜା ଗମ୍ପୋଙ୍କର ଇଚ୍ଛା ପୂରଣ ହେଲା । ଜାକଜମକରେ ମାର୍ପୋରୀର ରାଜା ଗମ୍ପୋ ଚୀନ୍‌ର ଅନିନ୍ଦ୍ୟସୁନ୍ଦରୀ ରାଜକୁମାରୀ କୁଞ୍ଜୁଙ୍କୁ ବିବାହ କଲେ ।

ଗାର୍ପାଙ୍କର ବିଚକ୍ଷଣ ବୁଦ୍ଧି, ଧୈର୍ଯ୍ୟ ଓ ନିରୀକ୍ଷଣ କରିବାର ଅଭୂତଶକ୍ତି ପ୍ରବଳ ପ୍ରତାପୀ ରାଜା ଗମ୍ପୋଙ୍କୁ ସ୍ତମ୍ଭିତ କରି ଦେଇଥିଲା ।

———

# ଲାମା ଓ ମାଛ

ଲଦାଖର ଗୋଟିଏ ଛୋଟ ରାଜ୍ୟ । ସେଠାର ରାଜାପୁଅ, ମନ୍ତ୍ରୀପୁଅ ଓ ବଣିକପୁଅ ତିନହେଁ ପରମ ବନ୍ଧୁ । ରାଜାପୁଅ ନାଁ ଶେରିଙ୍ଗ । ମନ୍ତ୍ରୀ ପୁଅ ନାଁ ନିସଙ୍ଗ । ବଣିକପୁଅ ନାଁ ରାବ୍‌ସେଲ୍ । ସେମାନେ ଏକାଠି ପଢ଼ନ୍ତି । ଏକାଠି ଖେଳନ୍ତି । ଜଣେ ଗୁରୁଙ୍କ-ଠାରୁ ସେମାନେ ଏକାଠି ଧନୁର୍ବିଦ୍ୟା ବି ଶିଖନ୍ତି ।

ଦିନକର କଥା । ତିନିବନ୍ଧୁ ଯାକ ସିନ୍ଧୁ ନଈକୂଳରେ ଖେଳୁଥିଲେ । ହଠାତ୍ ସେମାନେ ନଈପାଣିକୁ ପଥର ପକେଇବାରେ ଲାଗିଲେ । ନଈକଡ଼ରେ ପଥର ଖୋଲି ଭିତରେ ମାଛ ଦଳଟିଏ ଶୋଇଥିଲେ । ପଥର ପଡ଼ି ପାଣି ଚହଲିବାରୁ ସେମାନେ ପଦାକୁ ବାହାରି ଆସି ପହଁରିଲେ । ବଡ଼ମାଛଟିଏ ତା ଭିତରେ ଥିଲା । ତିନି ବନ୍ଧୁ ଆଗରୁ କେବେ ଏତେବଡ଼ ମାଛଟିଏ ଦେଖି ନ ଥିଲେ । ତାକୁ ସେମାନେ ଯେମିତି ଦେଖି ପକେଇଛନ୍ତି, ଖୁବ୍ ଖୁସି ହୋଇଗଲେ । ତାକୁ ମାରିବା ପାଇଁ ସେମାନେ ତା ଦେହକୁ ଲକ୍ଷ୍ୟ କରି ଆହୁରି ପଥର ପକେଇଲେ ।

ରାଜାପୁଅ ଶେରିଙ୍ଗ କହିଲା—"ମାଛର ଜୀବନ ତା ମୁଣ୍ଡରେ ଥାଏ । ମୁଣ୍ଡରେ ତାର ପଥର ବାଜିଲେ ସେ ସାଙ୍ଗେ ସାଙ୍ଗେ ମରିଯିବ । ଆସ, ତା ମୁଣ୍ଡକୁ ଲକ୍ଷ୍ୟ କରି ପଥର ଫିଙ୍ଗାଇବା ।"

ମନ୍ତ୍ରୀପୁଅ ବି ସଙ୍ଗେ ପ୍ରତିବାଦ କଲା । କହିଲା—"ଆରେ ନାଇଁ । ମାଛର ଜୀବନ ତା ପାକସ୍ଥଳୀରେ । ସେ କଥା ମୋ ମା କହୁଥିଲେ । ଚାଲ, ତାକୁ ମାରିବା ପାଇଁ ତା ପେଟକୁ ଲକ୍ଷ୍ୟକରି ପଥର ପକାଇବା ।"

ବଣିକପୁଅ ଋବ୍‌ସେଲ୍ କହିଲା—"ଜାଣିଛ ! ମୋ ଜେଜେ ହେଉଛନ୍ତି ସବୁଠୁ ବୁଢ଼ା । ସେ ବହୁତ କଥା ଜାଣନ୍ତି । ସେ ମତେ କହୁଥିଲେ ଯେ ମାଛର ଜୀବନ ତା ଲାଞ୍ଜରେ । ଆସ, ତାର ଲାଞ୍ଜକୁ ପଥର ମାରିବା ଯେ, ସେ ସାଙ୍ଗେ ସାଙ୍ଗେ ମରିଯିବ ।"

ତିନିବନ୍ଧୁ ନିଜ ନିଜ କଥାରେ ଅଟଳ । ବହୁ ଯୁକ୍ତିତର୍କ ଚାଲିଲା । କଳଗୋଳରେ ସମସ୍ତେ ମାତିଲେ । ଏଣେ ମାଛ ସବୁ ପହଁରି ପହଁରି ଦୂରକୁ ପଳେଇଲେ ।

କିଛି ସମୟ ପରେ କଳି ସରିଲା । ତିନିହେଁ ଯାକ ନଈକୁ ଉଣ୍ଡିଲେ । ମାଛମାନଙ୍କର ଚିହ୍ନ ବର୍ଣ୍ଣ କିଛି ପାଇଲେ ନାହିଁ । ନିଜ ନିଜ ଭିତରେ କଳି କଲେ, ଅନ୍ୟମାନେ ଯେ ସୁବିଧା ନେଇଅଛନ୍ତି ସେ କଥା ସେମାନେ ହୃଦୟଙ୍ଗମ କଲେ । ନିଜର ବୋକାମି ଯୋଗୁ ମାଛମାନେ ବି କେମିତି ତାଙ୍କୁ ଠକି ଦେଲେ, ସେ କଥା କୁହାକୋହି ହୋଇ ଖୁବ୍ ହସିଲେ ।

ସବୁ ମଣିଷର ଆତ୍ମାଭିମାନ ଅଛି । ମାଛମାନେ ସିନା ଚାଲିଗଲେ ତିନି ବନ୍ଧୁ ଯାକ ନିଜ ନିଜ କଥା ଠିକ୍ ବୋଲି ଯୁକ୍ତି ବାଢ଼ି ବସିଲେ । ବହୁ ଯୁକ୍ତିତର୍କ ପରେ ସେମାନେ ରାଜି ହେଲେ ଯେ, ଜଣେ ବିଜ୍ଞ ଲୋକଙ୍କ ସାଥିରେ ପରାମର୍ଶ କରିବେ । ତା ପରେ କାହା ପାଖରୁ ପରାମର୍ଶ ଆଣିବାକୁ ଯିବେ, ଆଲୋଚନା କଲେ । ଶେଷକୁ ସ୍ଥିରହେଲା ଯେ, ସମସ୍ତଙ୍କ ମତରେ ଲାମା ଜ୍ଞାନୀ ଓ

ବିଶ୍ବରବନ୍ତ । ତାଙ୍କର ମତାମତ ଏ ବିଷୟରେ ଲୋଡ଼ାଯିବ । ସେ ଯାହା କହିବେ ସମସ୍ତେ ମାନନେବେ ।

ଲାମାଙ୍କର କିନ୍ତୁ ସବୁଦିନେ ଦେଖା ମିଳେ ନାହିଁ । ତାଙ୍କୁ ଦେଖା କରିବାପାଇଁ ନିର୍ଦ୍ଦିଷ୍ଟ ଦିନ ଥାଏ । ତେଣୁ ତାଙ୍କ ସାଙ୍ଗେ ଦେଖା କରିବାକୁ ଆଉ ଦୁଇଦିନ ବାକି । ସ୍ଥିର ହେଲା, ଦୁଇଦିନ ପରେ ସମସ୍ତେ ଲାମାଙ୍କ ନିକଟକୁ ଯାଇ ପରାମର୍ଶ କରିବେ ।

ସେ ଦିନ ଆଲୋଚନା ସରିଲା ବେଳକୁ ସନ୍ଧ୍ୟା । ମଠ-ମାନଙ୍କରେ ଆଳତି ଘଣ୍ଟି ବାଜିଉଠିଲାଣି । ଭିକବନ୍ଧୁ ଘରକୁ ଦୌଡ଼ିଲେ । ରାଜପୁଅର ତ ମନ ଲାଗିଛି । ଘରେ ପହଞ୍ଚି ବୁଢ଼ା ସ୍ବକରିକୁ ଧରି ମଠକୁ ବାହାରିଗଲା । ମଠରେ ପହଞ୍ଚି ଭଗବାନ ମଞ୍ଜୁଶ୍ରୀଙ୍କର ସନ୍ଧ୍ୟା ଆଳତି ଦର୍ଶନକଲା । ଗଦ୍‌ଗଦ୍ ହୋଇ ଖୁବ୍ ଭକ୍ତି ସହକାରେ ସେଠାରେ ବସି ଭଗବାନଙ୍କୁ ପ୍ରାର୍ଥନା କଲା ।

ରାତିକ କଟିଲା । ରାଜପୁଅ ସେ । ଅବେଳାରେ ଲାମାଙ୍କ ନିକଟକୁ ଯିବାକୁ ତାକୁ କଷ୍ଟ ହେଲା ନାହିଁ । ଲାମାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ଗୋଟିଏ ସୁବର୍ଣ୍ଣ ମୁଦ୍ରା ଦର୍ଶନୀ ଦେଲା । ତାପରେ ଟିକିଏ ଆଲୋଚନା ପରେ ତା ବନ୍ଧୁମାନଙ୍କ ସାଙ୍ଗରେ ହୋଇଥିବା ଯୁକ୍ତିତର୍କ ବିଷୟ ଲାମାଙ୍କୁ ଜଣାଇଲା । ସାଙ୍ଗମାନଙ୍କ ଆଗରେ ମାଛର ଜୀବନ ତା ମୁଣ୍ଡରେ ଥାଏ ବୋଲି କହି ତା ଇଜ୍ଜତ ରଖିବାପାଇଁ ସେ ଲାମାଙ୍କୁ ନିବେଦନ କଲା ।

ପରଦିନ ସକାଳେ ହିସିଙ୍ଗ ଲାମାଙ୍କ ନିକଟକୁ ଆସିଲା । ସେ ମଣିମୁକ୍ତା ଖଚିତ ସୁନ୍ଦର ଖଣ୍ଡାଟିଏ ସାଙ୍ଗରେ ଆଣିଥିଲା । ସେ ବି ତ ମନ୍ତ୍ରୀଙ୍କ ପୁଅ । ତେଣୁ ଲାମାଙ୍କ ଦର୍ଶନ ପାଇବାରେ ତାର କିଛି

ଅସୁବିଧା ହେଲା ନାହିଁ । ସେ ଲାମାଙ୍କ ପାଦତଳେ ମୁଣ୍ଡିଆ ମାରି ଖଣ୍ଡାଟି ଥୋଇ କହିଲା—"ଆଜ୍ଞା, ମୋର ଏହି ଉପହାରଟିକୁ ସାଦରେ ଗ୍ରହଣ କରନ୍ତୁ ।"

ଲାମା ହସି ହସି ତାର ଆଗମନର କାରଣ ଜାଣିବାକୁ ଚାହିଁଲେ । ହିସଙ୍ଗ ତାର ବନ୍ଧୁମାନଙ୍କ ସହିତ ମାଛର ଜୀବନ ସମ୍ପର୍କରେ ହୋଇଥିବା ଆଲୋଚନା ବିଷୟ ଲାମାଙ୍କୁ କହିଲା । ତା ସାଙ୍ଗମାନେ ତାଙ୍କ ନିକଟକୁ ଆସିଲେ, ମାଛର ଜୀବନ ତାର ପାକସ୍ଥଳୀରେ ଥାଏ ବୋଲି କହିବାପାଇଁ ସେ ଲାମାଙ୍କୁ ଅନୁରୋଧ କଲା । ତା' ନ କଲେ ସେ ଫକୁଆ ହୋଇଯିବ । ତାର ସବୁ ମାନ, ସମ୍ମାନ ମଧ୍ୟ ଧୂଳିସାତ୍ ହୋଇଯିବ ବୋଲି ଲାମାଙ୍କୁ ଜଣାଇଦେଲା ।

ଲାମା ଟିକେ ହସିଦେଇ ତାହା ହିଁ କରିବେ ବୋଲି କଥା ଦେଲେ ।

ସେହିଦିନ ସନ୍ଧ୍ୟାବେଳେ ରବ୍‌ସେଲକୁ ପାହାଡ଼ ଚଢ଼ୁଥିବାର ଦେଖାଗଲା । ସେ ମଠଆଡ଼କୁ ମୁହାଁଇଥାଏ । ହାତରେ ତାର ଥଳିଟିଏ । ସେଥିରେ କିଛି ମାଂସ ଚମଡ଼ାରେ ଗୁରେଇକରି ସେ ନେଉଥାଏ । ମଠରେ ପହଞ୍ଚି ସେ ନିଜର ପରିଚୟ ଦେଲା । ତାକୁ ମଧ୍ୟ ସହଜରେ ଲାମାଙ୍କ ଦର୍ଶନ ମିଳିଗଲା । ଲାମାଙ୍କୁ ଭକ୍ତି ସହକାରେ ପ୍ରଣାମ ଜଣାଇ ଚମଡ଼ାରେ ଗୁରିହୋଇଥିବା ମାଂସଟିକ ଉପହାର ଦେଲା ।

ରବ୍‌ସେଲ ଘଟଣାଟିର ପୁନରାବୃତ୍ତି କରି କାକୁତି ମିନତି ହୋଇ ଲାମାଙ୍କୁ କହିଲା—"ଆଜ୍ଞା, ଆମେ ତିନିହେଁ ଯେତେବେଳେ ଏକାଠି ଆପଣଙ୍କ ନିକଟକୁ ଆସିବୁ, ଆପଣ କହିବେ ଯେ, ମାଛର ଜୀବନ ତା ଲାଞ୍ଜରେ ଥାଏ । ନ ହେଲେ ମୁଁ ମିଛୁଆ ହୋଇଯିବି ।"

ଲମା ତା' କଥାରେ ବ ହଁ ଭରିଲେ ।

ପରଦିନ ସପ୍ତାହିକ ଭୋଜର ଦିନ । ଭୋଜଟି ଆନନ୍ଦରେ କଟିଲା । ତିନବନ୍ଧୁ ସେମାନଙ୍କର ସବୁଠୁ ବଢ଼ିଆ ପୋଷାକ ପିନ୍ଧି ପାହାଡ଼ ଚଢ଼ି ମଠକୁ ବାହାରିଲେ । ମଠରେ ସେମାନେ ପହଞ୍ଚିବା ମାତ୍ରେ ଗୁମ୍ଫପାଖରେ ହାତ ଯୋଡ଼ି ହାତକୁ ମୁଣ୍ଡରେ ମାରି ମାରି ଭିତରେ ପ୍ରବେଶ କଲେ । ପ୍ରଥମେ ବ୍ରୋଞ୍ଜମୂର୍ତ୍ତି ମଞ୍ଜୁଶ୍ରୀଙ୍କ ପାଦତଳେ ଲମ୍ବହୋଇ ପଡ଼ିଗଲେ । ତାପରେ ଭଗବାନଙ୍କ ନିକଟରେ ଦୀପ ବସାଇଲେ । ନିଜ ନିଜର ମନକଥା ଠାକୁରଙ୍କୁ ଜଣାଇଲେ । ନିଜର କଥା କେମିତି ଠିକ୍ ହେବ, ସେଥିପାଇଁ ଭଗବାନଙ୍କୁ ବାରମ୍ବାର ମୁଣ୍ଡିଆ ମାରିଲେ ।

ତାପରେ ତିନହେଁ ସାଙ୍ଗ ହୋଇ ଲମାଙ୍କ ନିକଟକୁ ଗଲେ । ଶେଙ୍ଗି ପ୍ରଥମେ ସେମାନଙ୍କ ଆଲୋଚନା ବିଷୟରେ ଲମାଙ୍କୁ ଜଣାଇଲା । ତାପରେ ସେ କହିଲା—"ଆଜ୍ଞା ! ପଥର ତଳେ ସୁନା ଥାଏ । ସୂର୍ଯ୍ୟକିରଣ ତାକୁ ବାହାରକୁ ଆଣେ । ସୂର୍ଯ୍ୟକିରଣ ସୁବର୍ଣ୍ଣକୁ ଆଣିବା ଭଳି ଆପଣ ଦୟାକରି ସତ୍ୟକୁ ଅଜ୍ଞାନ ଅନ୍ଧକାରରୁ ବାହାରକୁ ଆଣନ୍ତୁ ।"

ଲମା ଗମ୍ଭୀର ଭାବରେ ବସି ସବୁ ଶୁଣୁଥାଆନ୍ତି । ତାପରେ ନିସଙ୍ଗର ପାଳି । ସେ କହିଲା—"ଆଜ୍ଞା, ଖଣ୍ଡା ସିଧାଭାବରେ ଆଘାତ ଦଏ । ଆପଣ ସେହିପରି ସରଳ ସତ୍ୟ ପ୍ରକାଶ କରନ୍ତୁ"

ଏଥରକ ଆସିଲା ଗବ୍‌ସେଲର ପାଳି । ସେ କହିଲା, "ଅପରିଷ୍କାର ମାଂସ ଚମଡ଼ା ଓ ଲୋମରେ ଘୋଡ଼େଇ ହୋଇଥାଏ କିନ୍ତୁ ଖାଇବାପାଇଁ ତାକୁ ଚମଡ଼ାରୁ ବାହାର କରି ପରିଷ୍କାର

କହିଯାଏ ଆପଣ ଯେମିତି ଅସତ୍ୟ ଭିତରେ ଥିବା ସତ୍ୟକୁ ବାଛି ଦିଅନ୍ତୁ ।"

ଏହିପରି ଭାବରେ ତିନବନ୍ଧୁ, ଯେ ଯାହାର ଉପହାର କଥା ଲମାଙ୍କୁ ମନେପକାଇଦେଲେ । ସମସ୍ତେ ଚାହିଁ ଥିଲେ, ସେମାନଙ୍କ କଥା ସତ୍ୟ ବୋଲି ଘୋଷିତ ହେଉ ।

ଲମା ଖୁବ୍ ଗମ୍ଭୀର ହୋଇ ବସିଥାଆନ୍ତି । ସମସ୍ତଙ୍କ କଥା ସେ ମନଦେଇ ଶୁଣିଲେ । ସେ ତ କୃଟମାଛଙ୍କ ତଥା ରାଜମାଛଙ୍କ । ଅଲଗା ଅଲଗା ଭାବରେ ତନୋଟିଯାକ ଉପହାର ସେ ଗ୍ରହଣ କରିଥିଲେ । ଆଉ ସେମାନଙ୍କ କଥା ଠିକ୍ ବୋଲି କହିବା ପାଇଁ ଅଲଗା ଅଲଗା ଜବାବ ମଧ୍ୟ ଦେଇଥିଲେ । ତେଣୁ ତିନବନ୍ଧୁ ଚାତକ ପରି ଲମାଙ୍କ ମୁହଁକୁ ଅନାଇ ଥାଆନ୍ତି ।

ଲମା ସମସ୍ତଙ୍କୁ ଚାହିଁ ଟିକଏ ମୁରୁକ ହସାଦେଇ କହିଲେ—"ତମେ ସମସ୍ତେ ସତକଥା କହୁଛ । ତମ ସମସ୍ତଙ୍କ କଥା ଠିକ୍ ।"

ତିନବନ୍ଧୁ ଏହା ଶୁଣି କେବଳ ପରସ୍ପରକୁ ଚାହିଁଲେ । ତାପରେ ପଚାରିଲେ—"ଆଜ୍ଞା ! ଏହା କପରି ସମ୍ଭବପର ଆମକୁ ବୁଝାଇ କୁହନ୍ତୁ ।"

ଲମା ବୁଝେଇ କହିଲେ—"ଏଇ ପୃଥିବୀରେ ତିନପ୍ରକାର ମାଛ ଅଛନ୍ତି । ଗୋଟିଏ ଶ୍ରେଣୀ ମାଛଙ୍କ 'ଜୀବନ' ମୁଣ୍ଡରେ ଥାଏ । ଆଉ କେତେକଙ୍କର ପାକସ୍ଥଳୀରେ ଓ ଅନ୍ୟମାନଙ୍କର ଲାଞ୍ଜରେ ଥାଏ, ତେଣୁ ତମ ସମସ୍ତଙ୍କ କଥା ସତ ଓ ଠିକ୍ ।"

ଏହାଶୁଣି ତିନିଜଣଯାକ ଖୁବ୍ ଖୁସି ହୋଇଗଲେ । ସେମାନେ ଲମାଙ୍କ କଥାକୁ ବିଶ୍ୱାସ କଲେ ଓ ଆନନ୍ଦରେ ତିନିହେଁ ଘରକୁ ଫେରିଲେ ।

ଲମା ମନଲକ୍ଷି କଥା କହିପାରିଥିବାରୁ ତିନୋଟି ବଢ଼ିଆ ଜିନିଷ ଉପହାର ପାଇଲେ--ଗୋଟିଏ ସୁନା ମୋହର, ମଣିମୁକ୍ତାଖଚିତ ଗୋଟିଏ ସୁନ୍ଦର ଖଣ୍ଡା ଓ ଖାଇବା ପାଇଁ କଚ୍ଛ ମାଂସ ।

---

# ପ୍ରତ୍ୟାବର୍ତ୍ତନ

ରାଜାମାନେ ସାଧାରଣତଃ ଶିକାର ପ୍ରିୟ, ଖାମ୍ ରାଜ୍ୟର ରାଜା ତା'ର ବ୍ୟତିକ୍ରମ ନୁହନ୍ତି ।

ଦିନେ ଖାମ୍ ର ରାଜା ଶିକାରରୁ ଫେରୁଥାଆନ୍ତି । ଗହଣରେ ପ୍ରଧାନମନ୍ତ୍ରୀ । ଜଙ୍ଗଲରେ ବୁଲି ବୁଲି ସେମାନେ ହାଲିଆ । ଘୋଡ଼ାମାନଙ୍କ ଅବସ୍ଥା ବି ତଦ୍ରୂପ ।

ବାଟରେ ଛୋଟିଆ ନଈଟିଏ ପଡ଼ିଲା । କୂଳରେ ତା'ର ଚା' ଦୋକାନ । ରାଜା ସେଠାରେ ଅଟକିଲେ । ସମସ୍ତେ ଚା' ପିଇ ସ୍ଫୂର୍ତ୍ତି ଅନୁଭବ କଲେ । ଘୋଡ଼ାମାନଙ୍କୁ ପାଣି ପିଆଇ ସାରିବା ପରେ ପୁଣି ସେମାନେ ଯିବାକୁ ବାହାରିଲେ ।

ଠିକ୍ ସେତିକିବେଳେ, ରାଜା ଗୀତଟିଏ ଶୁଣି ପାରିଲେ । ଗୀତଟିର ସ୍ୱର ଅତ୍ୟନ୍ତ ମଧୁର, ମନମୁଗ୍ଧକର ଓ ଲାଳିତ୍ୟମୟ, ରାଜା ମନ୍ତ୍ରମୁଗ୍ଧ ହୋଇଗଲେ । ସେ ଆଉ ଆଗେଇ ପାରିଲେ ନାହିଁ । ଗାୟକକୁ ଦେଖିବାକୁ ତାଙ୍କର ପ୍ରବଳ ଇଚ୍ଛା ହେଲା । ପ୍ରଧାନମନ୍ତ୍ରୀଙ୍କୁ ସେଠାରେ ଅପେକ୍ଷା କରିବାକୁ ଆଦେଶ ଦେଇ, ଯେଉଁ ଦିଗରୁ ଗୀତର ଲହରୀ ଆସୁଥିଲା, ସେଇଦିଗକୁ ଘୋଡ଼ା ଛୁଟାଇ ଦେଲେ ।

ଏହା ଭିତରେ ସେ ପାହାଡ଼ ଆରପଟେ ପହଞ୍ଚି ଯାଇଥିଲେ । ସେଠାରେ ଗୋଟିଏ ଝିଅଟି ଚଢ଼େଇ ଗୀତ ଗାଉଥିଲା । ଡେଣାରେ ତାର ଇନ୍ଦ୍ରଧନୁର ସପ୍ତରଙ୍ଗ । ଥଣ୍ଟ ଆଉ ପଞ୍ଝା ତା'ର ସତେ ଯେମିତି ସୁନାରେ ତିଆରି । ଆଖି ଦୁଇଟି ଗାଢ଼ ନାଲି । ପଦ୍ମରାଗମଣିପରି ।

ଚଢ଼େଇଟିକୁ ଦେଖି ରାଜା ଖାଲି ତ ଖୁସି ହେଲେ ନାହିଁ, ଆଶ୍ଚର୍ଯ୍ୟ ବି ହୋଇଗଲେ । ଆସ୍ତେକନେ ଘୋଡ଼ାରୁ ଓହ୍ଲାଇ ଧୀରେ ଧୀରେ ତା' ଆଡ଼କୁ ଆଗେଇଗଲେ । ଚଢ଼େଇର ଯେପରି ଭୟ ନ ହୁଏ, ସେଥିପାଇଁ ସେ ସାବଧାନ ଥିଲେ ।

ପାଖରେ ପହଞ୍ଚି ଦେଖିଲେ, ଚଢ଼େଇଟି ଆହତ । ଉଡ଼ିବାର ଶକ୍ତି ନାହିଁ ।

ରାଜା ତ ଜଙ୍ଗଲକୁ ଆସିଥିଲେ । ବିପଦ ଆପଦ ବି ତ ଅଛି । ଖାଦ୍ୟ ଓ ପାନୀୟ ପାଖରେ ଥିଲେ ଚିନ୍ତା ନ ଥାଏ । ସେଥିପାଇଁ ରାଜାଙ୍କ ପାଖରେ କିଛି ଛତୁ ଥିଲା । ମୁଠିଏ ଛତୁ ଧରି ସେ ଚଢ଼େଇଆଡ଼କୁ ବଢ଼େଇ ଦେଲେ । ତାପରେ ତାକୁ ପାଖକୁ ଆସିବା ପାଇଁ କଅଁଳେଇ ଡାକିଲେ ।

ଚଢ଼େଇଟି ସନ୍ତର୍ପଣରେ ରାଜାଆଡ଼କୁ ଚାହିଁଲା । ରାଜାଙ୍କ ଛଡ଼ା କେହି ସେଠି ନ ଥିଲେ । ରାଜାଙ୍କ ବ୍ୟବହାରରେ ସେ ସନ୍ତୁଷ୍ଟ ହେଲା । ତାଙ୍କର ଆନ୍ତରିକତା, ଶ୍ରଦ୍ଧା, ସ୍ନେହ ଓ କାରୁଣ୍ୟ ସେ ଅନୁଭବ କଲା । ତେଣୁ ତା ମନରେ ଆସିଲା ଅସୀମ ବିଶ୍ୱାସ । ରାଜାଙ୍କ ଉପସ୍ଥିତି ତାକୁ ଆଶ୍ୱାସନା ଦେଲା । ସେ ଡେଇଁ ଡେଇଁ ରାଜାଙ୍କ ପାଖକୁ ଆସିଲା । ହାତରୁ ତାଙ୍କର ଛତୁ ଖୁମ୍ପି ଖାଇଲା ।

ଏପରି ସୁନ୍ଦରିଆ ଚଢ଼େଇ ରାଜା କେବେ ଦେଖି ନ ଥିଲେ । ପାଖରେ ତାକୁ ଦେଖି ଖୁସି ହୋଇଗଲେ । ତନ୍ମୟ ହୋଇ ସେ ତାର ଖାଇବା ଦେଖୁଥାନ୍ତି । ଏହି ସମୟରେ ଆଖି ପିଛୁଳାକେ ଚଢ଼େଇଟି ଉଭେଇଗଲା । ତା ଜାଗାରେ ଗୋଟିଏ ଅପୂର୍ବ ସୁନ୍ଦରୀ ଝିଅଟିଏ ଠିଆ ହୋଇଗଲା । ମୁହଁରେ ତାର ଅପୂର୍ବ ଜ୍ୟୋତି । ଆଖି ଦୁଇଟା ଚଞ୍ଚଳ ଓ ଛନଛନ । ବାଳଗୁଡ଼ିକ ବେଶ୍ ଲମ୍ବା, ଗୋଇଠି ଛୁଉଁଥାଏ । ଦେହରେ ତାର ମୂଲ୍ୟବାନ୍ ରେଶମ ପୋଷାକ । ମୁଣ୍ଡ, ବେକ ଆଉ ହାତରେ ମଣିମୁକ୍ତାଖଚିତ ସୁନାର ଅଳଙ୍କାର ।

ରାଜା ନିର୍ବାକ, ନିସ୍ପନ୍ଦ, କିଂକର୍ତ୍ତବ୍ୟବିମୂଢ଼ । ଖାଲି ଅପଲକ ନେତ୍ରରେ ଝିଅଟିକୁ ଚାହିଁଥାଆନ୍ତି ।

ଟିକିଏ ମୁରୁକି ହସି ଝିଅଟି ତାର ହାତ ଦୁଇଟି ଉଠାଇ ନମସ୍କାର କଲା । ନୀରବତା ଭଙ୍ଗ କରି କହିଲା—"ଆପଣଙ୍କ ଶ୍ରଦ୍ଧା, ସ୍ନେହ ଆଉ ଦୟା ମୋତେ ମୋର ଅଭିଶାପରୁ ମୁକ୍ତ କରିଛି । ମୁଁ ଆପଣଙ୍କଠାରେ ଋଣୀ । ମୋର ସଂସାରରେ କେହି ଆଉ ନାହାଁନ୍ତି । ମୋତେ ସାଥିରେ ନେଇଯାଆନ୍ତୁ । ମୁଁ ଆଜିଠାରୁ ଆପଣଙ୍କ ସେବାରେ ନିଜକୁ ନିୟୋଜିତ କରି ଋଣ ପରିଶୋଧ କରିବି ।"

ମୁହୂର୍ତ୍ତ ଭିତରେ ଯାହା ଘଟିଗଲା, ତାହା ରାଜାଙ୍କୁ ସ୍ତମ୍ଭୀଭୂତ କରି ଦେଇଥିଲା । ସେ ତାଙ୍କର ସ୍ୱାଭାବିକ ଅବସ୍ଥାକୁ ଏବେ ବି ଫେରି ନ ଥିଲେ । ରାଜା ତାଙ୍କ ଆଖିକୁ ଜମା ବିଶ୍ୱାସ କରିପାରୁ-ନ ଥିଲେ । ଝିଅଟିର କଥା କେଇପଦ ଶୁଣି ତାଙ୍କର କିଛି ବିଶ୍ୱାସ ଆସିଲା । ତଥାପି ସେ ଝିଅଟିର ପରିଚୟ ଚାହୁଁଥିଲେ । ସେଥିପାଇଁ ପଚାରିଲେ—"ତମେ କିଏ ?"

ଝିଅଟିର ମୁହଁରେ ପୁଣି ହସ । ଖିଲ ଖିଲ ତା'ର ଶବ୍ଦ । ମୁକ୍ତାପରି ଧଳା ତା'ର ଦାନ୍ତ । ଚନ୍ଦ୍ରପରି ତା'ର ମୁହଁ । ହସିଲା ମୁହଁ ତା'ର ସୌନ୍ଦର୍ଯ୍ୟକୁ ଆହୁରି ବଢ଼ାଇ ଦେଉଥାଏ ।

ସେ ହସି ହସି ଉତ୍ତର ଦେଲା—"ଆପଣଙ୍କର ସେବକାରେ ଡୋଲ୍ମା ସାଙ୍ଗମୋ ।"

ରାଜା ଏବେ ସମ୍ପୂର୍ଣ୍ଣ ପ୍ରକୃତିସ୍ଥ । ତାଙ୍କ ଆଗରେ ଗୋଟିଏ ଅତ୍ୟନ୍ତ ସୁନ୍ଦରୀ ଝିଅ ହୋଇଯାଇଛି, ସେ ନିଜେ ଦେଖିଛନ୍ତି । ତେଣୁ ସେ ଝିଅଟିକୁ ଅବିଶ୍ୱାସ କରିପାରୁ ନ ଥିଲେ । ତେଣୁ ଝିଅଟିର ରୂପରେ ସେ ତ ମୁଗ୍ଧ । ତା ଛଡ଼ା ଝିଅଟିର ବିନମ୍ର ସ୍ୱଭାବ ଦେଖି, ମଧୁର କଥା ଶୁଣି ସେ ତନ୍ମୟ ହୋଇଗଲେ । ଯେତେବେଳେ ଝିଅଟି ତାଙ୍କର ଆଶ୍ରା ଲୋଡ଼ିବା କଥା କହିଲା, ସେ ତାକୁ ସାଥିରେ ଆଣିବାକୁ ସ୍ଥିର କଲେ ଓ ଘୋଡ଼ାରେ ବସାଇ ନଅରକୁ ଫେରି ଆସିଲେ ।

ରାଜାଙ୍କର ଆଗରାଣୀ ବଡ଼ ଦୁଷ୍ଟ । ସମସ୍ତଙ୍କ ଉପରେ ସବୁବେଳେ ଚିଡ଼େ । ତା ବ୍ୟବହାରରେ ସମସ୍ତେ ଅତିଷ୍ଠ । ସେ ରାଜାଙ୍କର ମଧ ତତ୍ତ୍ୱ ନିଏ ନାହିଁ । ସାନ୍ନିଧ ତ ଦୂରର କଥା, ସୁସମ୍ପର୍କ ବି ନ ଥିଲା । ସେଥିପାଇଁ ରାଜା ବାହାରେ ଅଧିକ ସମୟ କଟାଉଥିଲେ ।

ସାଙ୍ଗମୋ ଆସିବାଦିନୁ ଉଆସର ପରିସ୍ଥିତି ବଦଳିଗଲା । ସେ ରାଜାଙ୍କର ତତ୍ତ୍ୱ ନିଏ । ପରିଚାରିକାମାନଙ୍କର ଖବର ଅନ୍ତର ବୁଝେ । ଅଳ୍ପଦିନ ଭିତରେ ସେ ସମସ୍ତଙ୍କ ମନ ଜିଣିନେଲା । ବେଳେ ବେଳେ ରାଜା ତା'ର ପରାମର୍ଶ ବି ଲୋଡ଼ନ୍ତି । ପାତ୍ର ମନ୍ତ୍ରୀମାନେ ତା'ର ପରାମର୍ଶକୁ ସମ୍ମାନ ଦିଅନ୍ତି । ତାର ବିଜ୍ଞତାରେ

ସେମାନେ ପ୍ରଶ୍ରବଚ । ତେଣୁ ସେମାନଙ୍କ କଥାରେ ରାଜା ସାଙ୍ଗ୍‌ମୋଙ୍କୁ ବିବାହ କଲେ ।

ରାଜା ଓ ନୂଆରାଣୀଙ୍କ ଶାସନରେ ସମସ୍ତେ ଖୁସି । ସେମାନେ ବି ସୁଖରେ ଥାଆନ୍ତି । ଏହା ଭିତରେ ସାଙ୍ଗ୍‌ମୋର ସୁନ୍ଦର ସୁନ୍ଦର ଦୁଇଟି ପିଲା ବି ହେଲେଣି । ତା ଭିତରୁ ଗୋଟିଏ ପୁଅ ଓ ଅନ୍ୟଟି ଝିଅ । ପୁଅର ନାଁ ଡେଲ୍‌ଡାନ୍ ଓ ଝିଅର ନାଁ ଡୋଲ୍‌ମା ।

ସୁଖ ସମସ୍ତଙ୍କର ସବୁଦିନ ରହେ ନାହିଁ । ସେ ପର୍ଯ୍ୟନ୍ତ ଆଗ ରାଣୀ ଚୁପ୍ ହୋଇଥାଏ । କାହାକୁ ସେ କିଛି କହେ ନାହିଁ ।

ସହିବାର ଶକ୍ତି ସମସ୍ତଙ୍କର ସୀମାବଦ୍ଧ । ଚପିଲେ, ମଣିଷ କାହାକୁ ମାନେ ନାହିଁ । ନିଜ ରୂପ ପ୍ରକାଶ ପାଏ ।

ଗୋଟିଏ ରାତରେ ରାଜା ନ ଥାନ୍ତି । ଆଗ ରାଣୀର ଚକ୍ରାନ୍ତରେ ସାଙ୍ଗ୍‌ମୋର ନିଦ ଭାଙ୍ଗିଗଲା । ଆଗରାଣୀ ପାଗଳପରି ନାଚୁଥାଏ । ଅସରନ୍ତି ଅଭିଶାପ ସାଙ୍ଗ୍‌ମୋ ଉପରେ ଢାଳୁଥାଏ । ସବୁ ଶୁଣି କିଛି ନ ଶୁଣିଲାପରି ସାଙ୍ଗ୍‌ମୋ ବିଛଣାରେ ପଡ଼ିରହିଲା ।

ସେଇଦିନଠାରୁ ଆଗ ରାଣୀ ଆଉ ଚୁପ୍ ହୋଇ ରହେ ନାହିଁ । ରାଜାଙ୍କ ଅନୁପସ୍ଥିତିରେ ଖୁବ୍ ପାଟି କରେ । ସାଙ୍ଗ୍‌ମୋଙ୍କୁ ଗାଳି-ଦିଏ, ତା ପାଟିରେ ଉଆସ କମ୍ପେ ।

ସାଙ୍ଗ୍‌ମୋ ରାଜାଙ୍କୁ ଖୁବ୍ ଭଲ ପାଏ । ସବୁବେଳେ ତାଙ୍କର ଶାନ୍ତି ଓ ସୁଖ ସେ ଲୋଡ଼େ । ଆଗରାଣୀର କାର୍ଯ୍ୟକଳାପ ଜାଣିଲେ ରାଜା ବିରକ୍ତ ହେବେ, ପରିବାରରେ ଅଶାନ୍ତି ବଢ଼ିବ, ସେଥିପାଇଁ ସେ ରାଜାଙ୍କୁ କିଛି କହେ ନାହିଁ ।

ସାଙ୍ଗ୍‌ମୋର ପ୍ରତିକ୍ରିୟାକୁ ଆଗରାଣୀ ଲକ୍ଷ୍ୟ କରୁଥାଏ । ତାର ନୀରବତାକୁ ସେ ଦୁର୍ବଳତା ବୋଲି ଧରିନେଇ ତା'ର ସୁଯୋଗ ନେଲା ।

ଏଥର ସେ ସାଙ୍ଗ୍‌ମୋ ଉପରେ ଅତ୍ୟାଚାର ଆରମ୍ଭ କରିଦେଲା । ତାର ଖାଇବା ପିଇବାରେ କଟକଣା କଲା । ତାର ଜିନିଷପତ୍ର ମଧ୍ୟ ଫିଙ୍ଗିଦେଲା ।

ଘରର ଶାନ୍ତି ପାଇଁ ସାଙ୍ଗ୍‌ମୋ ଯେତିକି ଯେତିକି ସହେ, ଆଗରାଣୀର ଅତ୍ୟାଚାର ତା ଉପରେ ସେତିକି ସେତିକି ବଢ଼େ ।

ଆଗରାଣୀର ଅତ୍ୟାଚାର ଏତିକି ଏମିତି ଅସହ୍ୟ ହେଲା ଯେ, ଘରେ ମୁହୂର୍ତ୍ତେ ରହିବାକୁ ସାଙ୍ଗ୍‌ମୋ ବି ଚାହିଁଲା ନାହିଁ । ଦିନେ ପୁଅ ଝିଅ, ସ୍ୱାମୀଙ୍କୁ ଛାଡ଼ି ପକ୍ଷୀଟିଏ ହୋଇ ସେ ଉଡ଼ିଗଲା ।

ସାଙ୍ଗ୍‌ମୋର ପଳାୟନରେ ଆଗରାଣୀ ହେଲା ଖୁସି । କିନ୍ତୁ ରାଜା ସବୁବେଳେ ଅନ୍ୟମନସ୍କ, ଚିନ୍ତିତ ଓ ବିବ୍ରତ । ଦୁଃଖରେ ସେ ଭାଙ୍ଗିପଡ଼ିଲେ । ଖାଇବା ପିଇବା ତାଙ୍କର ଠିକ୍ ରହିଲା ନାହିଁ । ରାଜକାର୍ଯ୍ୟ ବି ବୁଝିଲେ ନାହିଁ ।

ଆଗରାଣୀ ଏଥର ତାର ଆସ୍ଥାନ ଜମେଇ ବସିଲା । ରାଜାଙ୍କର ପ୍ରିୟପାତ୍ରମାନଙ୍କୁ ରାଜକାର୍ଯ୍ୟରୁ ବାହାର କରିଦେଲା । ଖଳଲୋକଙ୍କ ପରାମର୍ଶ ନେଲା । ଗୁଣିଆମାନଙ୍କୁ ଡାକି ରାଜାଙ୍କୁ ମୂକ କରିବାପାଇଁ କହିଲା । ଯାହାହେଉ, ଜଣେ ଗୁଣିଆ ଏଥିରେ ରାଜି ହେଲା । ସେ ଦେଇଥିବା ମନ୍ତୁରା ଚୂନାକୁ ଦ୍ୱ'ରେ ମିଶାଇ ରାଜାଙ୍କୁ ପିଆଇ ଦେଲା । ଗୁଣି କାମ୍‌କଲା । ରାଜା ମୂକ ପାଲଟିଗଲେ ।

ଏଥରକ ଆଗରାଣୀର କଡେପୁଅ ପାଳି'ର । ସେ ମୂକ-ରାଜାଙ୍କୁ ବନ୍ଦିକରି ଗୋଟିଏ ଘରେ ରଖିଦେଲା । ନିଜପୁଅକୁ ଅଭିଷେକ କରାଇ ରାଜା ବୋଲି ଘୋଷଣା କରିଦେଲା । ନିଜେ ରାଜମାତା ହିସାବରେ ଶାସନ ଚଳାଇଲା ।

ପ୍ରଜାମାନେ ଡେଲ୍‌ଡାନ୍ ଓ ଡୋଲ୍‌ମାକୁ ଖୁବ୍ ଭଲ ପାଆନ୍ତି । ପିଲ ଦ'ଟା ଦେଖିବାକୁ ଭାରି ସୁନ୍ଦର । ସେମାନେ ତାଙ୍କ ମା ପରି । ସେମାନଙ୍କର ଥିଲା ଅଦ୍‌ଭୁତ ଶକ୍ତି । ଅଲୌକିକ ଗୁଣ । ତାଙ୍କୁ ଯେ ଦେଖେ, ସେ ଦଣ୍ଡେ ଅନାଇ ରହେ । ଆପେ ଆପେ ତାଙ୍କ ଆଡ଼କୁ ଟାଣି ହୋଇଯାଏ । ସ୍ନେହ, ଶ୍ରଦ୍ଧା ଅଜାଡ଼ି-ଦେବା ପାଇଁ କୁଣ୍ଠାବୋଧ କରେ ନାହିଁ ।

ଡେଲଡାନ୍ ଓ ଡୋଲ୍‌ମାଙ୍କର ଲୋକପ୍ରିୟତା ଆଗସ୍ତଣୀର ଚକ୍ଷୁଶୂଳ ହେଲା । ଡେଲଡାନ୍ ବଡ଼ ହେଲେ ଯେ, ଲୋକେ ତାକୁ ରଜା କରିଦେବେ, ଏଥିରେ ତାର ସନ୍ଦେହ ନ ଥିଲା । ଏଇ ଆଶଙ୍କାରେ ସେ ଶିହରି ଉଠୁଥିଲା । ଡେଲଡାନ୍‌କୁ ମାରି, ତା ନିଜ ପୁଅକୁ ନିଷ୍କଣ୍ଟକ କରିବାର ଚିନ୍ତା ତାକୁ ଘାରୁଥାଏ ।

ଦିନେ ସେ ଘାତକକୁ ଗୁପ୍ତରେ ଡକାଇଲା । ଡେଲ୍‌ଡାନ୍‌କୁ ନେଇ ପାହାଡ଼ ଉପରେ ହତ୍ୟା କରିବାକୁ ଆଦେଶ ଦେଲା । ତା ଶବକୁ ଯେପରି କେହି ଦେଖି ନ ପାରିବେ, ସେଥିପାଇଁ ତାକୁ ଶାଗୁଣାମାନଙ୍କ ଆଗରେ ପକେଇ ଦେବାକୁ କହିଲା । ତାଗିଦା ମଧ୍ୟ କରିଦେଲା ଯେ, ଏ କଥା ପ୍ରକାଶିତ ହେଲେ ମୃତ୍ୟୁଦଣ୍ଡ ତାର ଅନିବାର୍ଯ୍ୟ ।

ଘାତକଟି ଦୋଷୀ ସାବ୍ୟସ୍ତ ହୋଇଥିବା ମଣିଷର ଜୀବନ ନିଏ । ମାତ୍ର ଦୋଷୀ ହୋଇ ନ ଥିବା ମଣିଷକୁ ସେ କେବେ ମାରି ନାହିଁ । କେବଳ କର୍ତ୍ତବ୍ୟ ତାଡ଼ନାରେ ଦେଶର ଶାନ୍ତି ବା ମଙ୍ଗଳ ପାଇଁ ସେ ମଣିଷକୁ ହତ୍ୟା କରିଥାଏ । ଘାତକ ହେଲେ ବି ସେ ଅମଣିଷ ନୁହେଁ । ଭାରି ଦୟାଳୁ । ବିନା ଦୋଷରେ ପିଲା ଦୁଇଟିଙ୍କୁ ମାରିବା ଆଦେଶକୁ ସେ ପସନ୍ଦ କଲା ନାହିଁ । କିନ୍ତୁ ନିର୍ଦ୍ଦେଶ

ଅନୁସାରେ ପିଲା ଦୁହିଁଙ୍କୁ ପାହାଡ଼ ଉପରକୁ ନେଇଗଲା । ପାହାଡ଼ ପାର କରାଇ ଆରପଟେ ଛାଡ଼ିଦେଇ ଚାଲିଆସିଲା ।

ରାଜମାତାର ଘାତକ ଉପରେ ଜମା ବିଶ୍ୱାସ ନ ଥିଲା । ସେଥିପାଇଁ ସେ ଗୋଟିଏ ଗୁପ୍ତଚର ତା ପିଛା ଲଗାଇ ଦେଇଥିଲା । ପିଲା ଦୁଇଟିଙ୍କୁ ଘାତକ ପାହାଡ଼ ପାର କରାଇ ଦେଇଥିବା କଥା ସେ ଯେମିତି ଜାଣିପାରିଛି, ସାଙ୍ଗେ ସାଙ୍ଗେ ସୈନ୍ୟମାନଙ୍କୁ ପଠାଇ ସେମାନଙ୍କୁ ଧରି ଆଣିଲା ।

ଏଥର ତ୍ରେଲଡାନ୍‌କୁ ସେ ନିଜେ ହତ୍ୟା କରିବାକୁ ସ୍ଥିରକଲା । ଦିନେ ବଡ଼ ସକାଳୁ ତ୍ରେଲ୍‌ଡାନକୁ ସାଥିରେ ଧରି ସେ ଏକ ପାହାଡ଼ ଉପରକୁ ଚାଲିଗଲା । ପାହାଡ଼ର ଆରପଟ ଘୋର ଖାଇ । ତଳକୁ ଆଖି ପାଏ ନାହିଁ । ସେଇଠି ତ୍ରେଲଡାନର ଗୋଡ଼ରେ ଗୋଡ଼କଡ଼ି, ହାତରେ ହାତକଡ଼ି ଆଉ ଆଖିରେ ଅନ୍ଧ ପୁଟୁଳି ବାନ୍ଧି ତଳକୁ ଠେଲି ଦେଲା । ତାର ଆଖି ଆଗରେ ତ୍ରେଲଡାନ କାନ୍ଦି ତଳକୁ ଚାଲିଗଲା । ପୁଅକୁ ତାର ଯେ ନିଷ୍କଣ୍ଟକ କରିପାରିଛି ସେଥିପାଇଁ ସେ ଭାରି ଖୁସି ।

ସାଙ୍ଗମୋ ସିନା ପକ୍ଷୀଟିଏ ହୋଇ ଉଡ଼ିଗଲା, କିନ୍ତୁ ତାର ନଜର ପିଲାଙ୍କ ଉପରେ ଥାଏ । ସେ ଆଗ-ରାଣୀର କାରସାଦି ଦେଖୁଥିଲା । ସେଥିପାଇଁ ପାହାଡ଼ ତଳେ ସେ ଅପେକ୍ଷା କରିଥାଏ । ପିଲାଟି ତଳେ ପଡ଼ିବା ପୂର୍ବରୁ ସେ ତାକୁ ଧରିନେଲା । ଆଖିରୁ ଅନ୍ଧ ପୁଟୁଳି, ଗୋଡ଼ ଆଉ ହାତରୁ କଡ଼ି ଖୋଲି ଦେଇ ଗୋଟିଏ ସ୍ଥାନକୁ ନେଇଗଲା । ସେଠି ଦିଗନ୍ତ ବ୍ୟାପୀ ସବୁଜ ପଡ଼ିଆ ପାଖରେ ଏକ ନଈ । ଖୁବ୍ ଗଭୀର । ପାଣି ତାର ନିର୍ମଳ । କାଚକେନ୍ଦୁପରି ।

ସେଇଠି ପୁଅପାଇଁ ଉଆସଟିଏ ସେ ତୋଳାଇଲା । ଲୋକ-ମାନଙ୍କୁ ଅଣାଇ ବସତି ସ୍ଥାପନ କଲା । ଧୀରେ ଧୀରେ ସେଇଠି ଗୋଟିଏ ସୁନ୍ଦର ସହର ଗଢ଼ି ଉଠିଲା । ସମତଳ ପଡ଼ିଆ ହେଲା ଶସ୍ୟ କ୍ଷେତ୍ର । ନଈରେ ହୋଇଚ ବାଣିଜ୍ୟ ଚାଲିଲା । ଚାରିଆଡ଼ୁ ଲୋକମାନେ ଆସି ସେଠି ଘରଦ୍ୱାର କରି ରହିଲେ । ସେଇଠି ଗୋଟେ ରାଜ୍ୟ ହୋଇଗଲା । ଡେଲଡ଼ାନ୍ ହେଲା ତାର ରାଜା ।

ସେଇ ରାଜ୍ୟରେ ଲୋକେ ଭଲରେ ଚଳନ୍ତି । ଚାରିଆଡ଼େ ଶାନ୍ତି । ସବୁ ଜିନିଷ ଶସ୍ତା ଓ ପ୍ରଚୁର । ଲୋକେ ଉକାଯ୍ୟକ୍ତ ସ୍ୱପ୍ନ । କାହା ପ୍ରତି କାହାର ଈର୍ଷା, ଦ୍ୱେଷ, ଘୃଣା ଭାବ ନ ଥାଏ । ସମସ୍ତଙ୍କର ସମସ୍ତଙ୍କ ପ୍ରତି ଥିଲା ଶ୍ରଦ୍ଧା, ସ୍ନେହ ଆଉ ମମତା । ଅର୍ଥର ଲାଳସା କାହାର ନ ଥିଲା । ସାରା ରାଜ୍ୟରେ ଦୁଃଖୀ ଭିକାରୀ କେହି ନ ଥିଲେ ।

ଦିନେ ଡେଲଡ଼ାନ ଝରକା ପାଖରେ ଠିଆ ହୋଇଥିଲା । ସେତିକିବେଳେ ଝିଅଟିଏ ଛିଣ୍ଡା ଲୁଗା ପିନ୍ଧି ହାତ ପତାଇ ରାସ୍ତାରେ ଯାଉଥିଲା । ତାକୁ ଦେଖି ଡେଲଡ଼ାନକୁ ଭାରି ବାଧିଲା । ନିଜ ରାଜ୍ୟମରେ ଦେଶ ଭିକାରୀ ଶୂନ୍ୟ ହୋଇଥିଲା । ପୁଣି ଆଜି ଭିକାରୀଟିଏ ! କାରଣ ଜାଣିବାକୁ ସେ ନିଜେ ଭିକାରୁଣୀ ପାଖକୁ ଧାଇଁଗଲା । ପାଖରେ ପହଞ୍ଚି ସେ ନିଜ ଆଖିକୁ ବିଶ୍ୱାସ କରି ପାରିଲା ନାହିଁ । ଭିକାରୁଣୀଟି ଯେ ଡୋଲମା, ଏଥିରେ ତାର ସନ୍ଦେହ ନ ଥିଲା । ତାକୁ ସେ ଉଆସକୁ ନେଇଗଲା । ଗାଧୁଆ ପାଧୁଆ କରାଇ ଦାମିକା ରେଶମ ପୋଷାକ ପିନ୍ଧାଇଦେଇ ଗରମ ଗରମ ବଢ଼ିଆ ଖାଦ୍ୟ ଖୁଆଇଲା ।

ଭାଇ ଭଉଣୀଙ୍କ ମିଳନ ଖବର ଚାରିଆଡ଼େ ବ୍ୟାପିଗଲା । ଭଉଣୀକୁ ଦେଖିବାକୁ ଅନେକ ଆସିଲେ । ଖୁସି ବି ହେଲେ ।

ଏଥର ଭାଇ ଭଉଣୀ ଆନନ୍ଦରେ ଉଆସରେ ଥାନ୍ତି । ତାଙ୍କୁ ଛାଡ଼ି ମା ତାଙ୍କର କୁଆଡ଼େ ଯାଏ ନାହିଁ । ସେମାନଙ୍କର ଅଭାବ କିଛି ନ ଥିଲା । ହେଲେ, ମା ତାଙ୍କର ମଣିଷ ରୂପ ନପାଇବାରୁ ସେମାନଙ୍କର ଭାରି ଦୁଃଖ ।

ଏପଟେ ଦୁଷ୍ଟାରାଣୀର ଅତ୍ୟାଚାରରେ ପ୍ରଜାପାଟକ ଅତିଷ୍ଠ ହୋଇ ଉଠିଲେ । ରାଜ୍ୟରେ ଖାଦ୍ୟାଭାବ ଦେଖାଦେଲା । ଜିନଷର ଦର ହୁ ହୁ ହୋଇ ଚଢ଼ିଗଲା । ଅସାମାଜିକ ଲୋକଙ୍କର ଆଧିପତ୍ୟ ବଢ଼ିଗଲା । ଚୋର, ଡକାୟତି ବଢ଼ିଚାଲିଲା । ଲୋକେ ଶାନ୍ତି ଓ ସୁଖରେ ରହିପାରିଲେ ନାହିଁ । ରାଜ୍ୟ ଛାଡ଼ି ଡେଲଡ଼ାନ୍ ରାଜ୍ୟକୁ ପଳେଇଲେ ।

ଦୁଷ୍ଟାରାଣୀ ଏସବୁ ଦେଖେ । ତାର ଉପାୟ ନ ଥିଲା । ପାତ୍ରମନ୍ତ୍ରୀମାନଙ୍କୁ ତ ବିଦାକରି ଦେଇଥିଲା । କେବଳ ତାର ଚୋଷାମଦିଆ ବେଢ଼ି ରହିଥିଲେ । ସେମାନେ ତାକୁ କିଛି ସାହାଯ୍ୟ କରନ୍ତି ନାହିଁ । ସେଥିପାଇଁ ସେ ରାଗେ । ବିରକ୍ତ ହୁଏ । ଡେଲଡ଼ାନ ଉପରେ ଖାଲି ଅଭିଶାପ ଢାଳେ । ସବୁଥିରେ ତାକୁ ଦୋଷଦିଏ । ପ୍ରତିଶୋଧ ନେବାର ଉପାୟ ପାଞ୍ଚେ ।

ସେ ତାର ପୁରୁଣା ଗୁଣିଆକୁ ପୁଣି ଡକେଇଲା । ଆଲୋଚନାପରେ ଗୁଣିଆ ସାଥିରେ କିଛି ଲୋକଧରି ଡେଲଡ଼ାନ୍ ରାଜ୍ୟକୁ ବାହାରିଲା ।

ଡେଲଡ଼ାନର ନଅର ଆଗରେ ସେମାନେ ଆସି ପହଞ୍ଚିଲେ । ସାଥିରେ ଆସିଥିବା ଲୋକମାନେ ଆଗରାଣୀ ନିର୍ଦ୍ଦେଶରେ ପାଟିତୁଣ୍ଡ ଆରମ୍ଭ କରିଦେଲେ । ରାଜକର୍ମଚାରୀମାନେ ଚେଷ୍ଟା କଲେ ବି ସେମାନେ ଶାନ୍ତ ହେଲେ ନାହିଁ । ଶାନ୍ତ କରିବାକୁ, ଡେଲଡ଼ାନ ସାଥିରେ ଭଉଣୀକୁ ଧରି ସେଠାକୁ ଆସିଲା ।

ଡେଲଡ଼ାନ୍‌କୁ ଦେଖିବାମାତ୍ରେ, ଗୁଣିଆ ମନ୍ତ୍ରସ୍ତ ଶରଟିଏ ତାକୁ ଲକ୍ଷ୍ୟକରି ଫିଙ୍ଗିଲା । ସାଙ୍ଗ୍‌ମୋ ତ ସବୁବେଳେ ସାଙ୍ଗରେ ଥାଏ । ସେ ପୁଅକୁ ରକ୍ଷା କରିବା ପାଇଁ କଣ୍ଟା ମନ୍ତ୍ରସ୍ତ ଚୂନା ବାଞ୍ଛିଦେଲା । ଶରଟି ଫେରିଯାଇ ଗୁଣିଆ ଓ ଦୁଷ୍ଟାରାଣୀ ଯେଉଁଠି ଥିଲେ ସେଇଠି ପଡ଼ିଲା । ତା ଦେହରୁ ନିଆଁ ବାହାରି ସେମାନଙ୍କ ଦେହରେ ଲାଗିଗଲା । ଯେତେ ଚେଷ୍ଟା କଲେ ସେମାନେ ନିଆଁ ଛଡ଼ାଇ ପାରିଲେ ନାହିଁ । ବିକଳ ହୋଇ କାନ୍ଦିଲେ । ଲୋକେ ବି ନିଆଁ ଲିଭେଇବାକୁ ଚେଷ୍ଟା କଲେ । ସେ ତ ଗୁଣୀ ନିଆଁ, ଉଦ୍ୟମରେ ଲିଭେ ବା କେଉଁଠୁ ! ସବୁ ଉଦ୍ୟମ ବ୍ୟର୍ଥ ହେଲା । ଦୁଷ୍ଟାରାଣୀ ଓ ଗୁଣିଆ ନିଆଁରେ ପୋଡ଼ି ପାଉଁଶ ହୋଇଗଲେ ।

ଡେଲଡ଼ାନ୍ ମା ଓ ଭଉଣୀଙ୍କୁ ସାଙ୍ଗରେ ଧରି ଗାମ୍‌କୁ ଫେରିଆସିଲା । ଏ ଖବର ପାଇ ଦୁଷ୍ଟାରାଣୀର ପୁଅ ରାଜ୍ୟ ଛାଡ଼ି ପଳାଇଗଲା । ଉଆସକୁ ଯାଇ ଡେଲଡ଼ାନ୍ ବାପାଙ୍କୁ ବନ୍ଦୀଶାଳାରୁ ମୁକ୍ତ କଲା ।

ସାଙ୍ଗ୍‌ମୋ କଣ୍ଟା ପାଉଡର ଗୁଣ୍ଡ ରାଜାଙ୍କ ଉପରେ ପକେଇଦେଲା । ରାଜା ସୁସ୍ଥ ହୋଇ କଥାବାର୍ତ୍ତା କଲେ । ସାଙ୍ଗମୋ ମଣିଷ ପାଲଟିଲା । ପାଖରେ ସାଙ୍ଗ୍‌ମୋ ଆଉ ପିଲାମାନଙ୍କୁ ଦେଖି ରାଜାଙ୍କର ଆନନ୍ଦ କହିଲେ ନ ସରେ । ସମସ୍ତେ ଶାନ୍ତିରେ ଓ ସୁଖରେ ଦିନ କାଟିଲେ ।

ନିଜ କାର୍ଯ୍ୟକଳାପ ଯୋଗୁ ଦୁଷ୍ଟାରାଣୀ ପୋଡ଼ି ପାଉଁଶ ହେଲା ଆଉ ପୁଅ ବାହାନାଭୂତ ପରି ଘୋର ଜଙ୍ଗଲରେ ବୁଲି ଜୀବନ କଟାଇଲା ।

———

# ଓଭେକଣ୍ଟୁଲ୍ ରାଜା

କେତେକାଳର କଥା, କହିହେବ ନାହିଁ । ସେତେବେଳକୁ କୋଶଳର ରାଜା ପ୍ରସେନ୍‌ଜିତ୍ ।

ତାଙ୍କ ପାଟରାଣୀଙ୍କର ପୁଅଟିଏ ହେଲା । ଏ ଖବର ପାଇ ରାଜା ପ୍ରସେନ୍‌ଜିତ୍ ଭାରି ଖୁସି ହୋଇଗଲେ । ଖବର ଆଣିଥିବା ଦାସୀକୁ ମୁକ୍ତା ହାରଟିଏ ଉପହାର ଦେଲେ ।

ସେତେବେଳକୁ ଚିକିତ୍ସା ବିଜ୍ଞାନ ବହୁ ପଛରେ ପଡ଼ିଥିଲା । ରୋଗ ହେଲେ ସମସ୍ତେ ଭଗବାନଙ୍କ ଆଶ୍ରୟ ନେଉଥିଲେ । ରାଜା ମଧ୍ୟ ସେଥିରୁ ବାଦ୍ ପଡ଼ୁ ନ ଥିଲେ । ବିପଦ ଆପଦରେ ସେମାନେ ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ । ରାଜା, ଜମିଦାର ଆଉ ପ୍ରଭାବଶାଳୀ ଲୋକେ ଏଥିପାଇଁ ବ୍ରାହ୍ମଣମାନଙ୍କୁ ନିଯୁକ୍ତ କରୁଥିଲେ । ପାଟରାଣୀ ଗର୍ଭବେଦନାରୁ ମୁକ୍ତ ହେବାପାଇଁ ଦରବାରରେ ବ୍ରାହ୍ମଣମାନେ ପ୍ରାର୍ଥନା କରୁଥିଲେ । ପୁତ୍ର ଲାଭର ଖବର ପାଇ ରାଜା ସେମାନଙ୍କୁ ଅଞ୍ଜୁଳାପୂର୍ଣ୍ଣ ସୁବର୍ଣ୍ଣ ଦାନ ଦେବାକୁ ଆଦେଶ ଦେଲେ ।

ନଅର ଉପରେ ତମ୍ବା ଘଣ୍ଟା ବଜାଇ ଏଇ ଶୁଭସମ୍ବାଦ ଘୋଷଣା କରାଗଲା । ପ୍ରସେନ୍‌ଜିତ୍‌ଙ୍କର ପୁଅ ହୋଇଥିବା ଖବର ଚାରିଆଡ଼େ ରାଷ୍ଟ୍ର ହୋଇଗଲା ।

ରାଜପୁତ୍ରଙ୍କ ନାଁ ରଖାଗଲା ବୁଦ୍ଧଶ୍ରୀ । ପୁଅର ଭବିଷ୍ୟତ ଜାଣିବାକୁ ରଜା ନିଜେ ଆଗ୍ରହୀ । ସେଥିପାଇଁ ସାଙ୍ଗେ ସାଙ୍ଗେ ରାଜଜ୍ୟୋତିଷଙ୍କୁ ଡକାହେଲା । ରାଜପୁତ୍ରର ଜାତକ ଶୀଘ୍ର ତିଆରି କରିବା ପାଇଁ ତାଙ୍କୁ ଆଦେଶ ହେଲା ।

ମହାରାଜା ପ୍ରସେନ୍‌ଜିତ୍ ପ୍ରବଳ ପ୍ରତାପୀ । ତାଙ୍କ ପୁଅର ଜାତକ ନିର୍ଭୁଲ ହେବା ଆବଶ୍ୟକ । ରାଜଜ୍ୟୋତିଷ ଏ ବିଷୟରେ ଖୁବ୍ ସଚେତନ । ନଚେତ୍ ଅବସ୍ଥା ତାଙ୍କର ସାଂଘାତିକ ହେବ । ଦେଶରୁ ବିତାଡ଼ନ ହେବା ମଧ୍ୟ ଅସମ୍ଭବ ନୁହେଁ । ସେଥିପାଇଁ ସେ ନିରୋଳାରେ ବସି ଗଣନା ଆରମ୍ଭ କରିଦେଲେ ।

ଜ୍ୟୋତିଷ ଏକାନ୍ତରେ ଗଣନା କରୁଥାଆନ୍ତି । ସକାଳୁ ବସିଥିଲେ ସେ । ରାତି ହେଲା । ତଥାପି ଗଣନା ସରିଲା ନାହିଁ । ରାଜଜ୍ୟୋତିଷ ସେ ଘରଭିତରୁ ବାହାରି ନାହାନ୍ତି କି ଟିକିଏ ଉଠିବି ନାହାନ୍ତି । ଖାଇବା ପିଇବା ଆଉ କଥାବାର୍ତ୍ତା କରିବା ତ ଦୂରର କଥା ।

ପ୍ରତିଥର ସେ ଗଣନା କରନ୍ତି । ଗଣନା ପରେ ସେ ଚିନ୍ତିତ ରହନ୍ତି । ଲିଖିତ ତାଳପତ୍ରକୁ ଚିରି ଚିରି କରି ଚିରି ଫିଙ୍ଗି ଦିଅନ୍ତି । ପୁଣି ଗଣନାରେ ଲିପ୍ତ ରହନ୍ତି ।

ଗଣନାରେ ଫଳ ଯାହା ଆସେ, ପ୍ରସେନ୍‌ଜିତ୍‌ଙ୍କୁ କହିବାକୁ ତାଙ୍କର ସାହାସ ପଡେ ନାହିଁ । ଜାଣେ କେଉଁଠି ଭୁଲ୍ ହୋଇଥିବ, ସେଥିପାଇଁ ପୁନର୍ବାର ଗଣନା ଆରମ୍ଭ କରିଦିଅନ୍ତି ।

ନବଜାତ ଶିଶୁଟିଏ ଦେଖିବାକୁ ସମସ୍ତେ ପ୍ରାୟ ଆଗ୍ରହୀ । ପ୍ରସେନ୍‌ଜିତ୍ ରଜା ହେଲେ ବି ମଣିଷ । ପୁଅ ହେବା ଖବରପାଇ ସେ ନିଜେ ଅନ୍ତଃପୁରକୁ ବିଜେକଲେ । ଧାଈ ନବଜାତ ପୁଅଟିକୁ ଆଣି ପ୍ରସେନ୍‌ଜିତ୍‌ଙ୍କୁ ଦେଖାଇଲା ।

ପିଲାଟି ସାଧାରଣ ପିଲପରି ନୁହେଁ । ତାର ଆଖି ଯୋଡ଼ିକ ମାଳ । ସବୁଯାକ ଦାନ୍ତ ତାର ଉଠିଯାଇଥାଏ । ଆଙ୍ଗୁଠିଯାକ ଛନ୍ଦାଛନ୍ଦ ହୋଇଥାଏ । ପିଲାଟିକୁ ଦେଖି ରାଜା ଖୁସି ହୋଇ-ପାରିଲେ ନାହିଁ । ସମସ୍ତ ଆନନ୍ଦ ଓ ଆଗ୍ରହ ତାଙ୍କ ମନରୁ ମିଳେଇଗଲା । ମୁହଁ ତାଙ୍କର ଫିକା ପଡ଼ିଗଲା । ସେ ଦୁଃଖରେ ଅଭିଭୂତ ହୋଇପଡ଼ିଲେ ।

ପିଲାଟିକୁ ଦେଖି ରାଜା ତାର ଭବିଷ୍ୟତ ପାଇଁ ଚିନ୍ତିତ । ରାଜଜ୍ୟୋତିଷଙ୍କ ନିକଟରୁ କିଛି ଖବର ନ ପାଇବାରୁ ରାଜା ବ୍ୟସ୍ତବ୍ୟସ୍ତ ହୋଇପଡ଼ିଲେ । ରାଜା ଜ୍ୟୋତିଷଙ୍କୁ ଡକାଇ କହିଲେ—"ମୋ ପିଲାଟି ତ ଅଦ୍ଭୁତ ପ୍ରକାରର ହୋଇଛି । ସେ କେବେ-ହେଲେ ସାଧାରଣ ମଣିଷ ହୋଇ ନ ପାରେ । ତମ ଗଣନାର ଫଳାଫଳ ମୁଁ ଶୀଘ୍ର ଜାଣିବାକୁ ଚାହେଁ ।"

ରାଜଜ୍ୟୋତିଷ ରାଜାଙ୍କ କଥା ଶୁଣି ଭୟରେ ଥାଲି ଥରିଲେ । ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ରାଜା ରାଜଜ୍ୟୋତିଷଙ୍କ ଅବସ୍ଥା ଲକ୍ଷ୍ୟ କଲେ । ତାପରେ ତାଙ୍କୁ ଅଭୟ ଦେଇ କହିଲେ—"ଜାତକ ଗଣନାରେ ଯାହା ଭବିଷ୍ୟତ ଦେଖୁଛ ନିର୍ଭୟରେ କୁହ । ବ୍ୟସ୍ତ ହେବାର କିଛି କାରଣ ନାହିଁ ।"

ରାଜଜ୍ୟୋତିଷ ଅତିମତ ହୋଇ କହିଲେ—"ମହିମା ! ଗଣନା ଭୁଲ ହୋଇପାରେ । ଯାହା ଜଣାଯାଉଛି, ଆପଣଙ୍କ ଜୀବନକାଳ ମଧ୍ୟରେ ଏ ରାଜକୁମାର ରାଜା ହେବେ ।"

ଭବିଷ୍ୟତବାଣୀ ଶୁଣି ପ୍ରସେନ୍‌ଜିତ୍‌ଙ୍କ ମୁହଁ ଶୁଖିଗଲା । ଲୋକମାନେ ତାଙ୍କ କିମ୍ଭୂତକିମାକାର ପୁଅକୁ ଦେଖି ଆଗରେ କିଛି କହିବେ ନାହିଁ, ପଛରେ ନିଶ୍ଚୟ ପରିହାସ କରିବେ । ଏଥିରେ

ତାଙ୍କର ତିଳେମାତ୍ର ସନ୍ଦେହ ନ ଥିଲା । ସେଥିପାଇଁ ସେ ଦୁଃଖରେ ଅଧୀର ହୋଇପଡ଼ିଲେ ।

ରାଜଜ୍ୟୋତିଷଙ୍କ ଗଣନା ଯଦି ସତ୍ୟହୁଏ, ତା' ହେଲେ ପୁଅ ତାଙ୍କୁ ଓ ରାଣୀମାନଙ୍କୁ ମାରି ରାଜାହେବ । ରାଜବଂଶର ମର୍ଯ୍ୟାଦା ଧୂଳିସାତ୍ ହୋଇଯିବ । ତାଙ୍କୁ ଏସବୁ ଚିନ୍ତା ବିବ୍ରତ କରି-ପକାଇଲା । ସେ କିଛି କହିଲେ ନାହିଁ । କିଛି ସମୟ ନୀରବ ରହିଲେ । ତାପରେ ଜ୍ୟୋତିଷଙ୍କୁ ପ୍ରତିକାରର ଉପାୟ ପଚାରିଲେ ।

ରାଜଜ୍ୟୋତିଷଙ୍କ ପ୍ରସ୍ତାବ ଅନୁସାରେ ବହୁ ପଣ୍ଡିତଙ୍କୁ ଡକାହେଲା । ସବୁ ବଡ଼ ବଡ଼ ପଣ୍ଡିତମାନେ ଏକାଠି ବସି ଆଲୋଚନା କଲେ । ସେମାନଙ୍କର ସୁଚିନ୍ତିତ ସିଦ୍ଧାନ୍ତ ହେଲା— "ରାଜକୁମାରଙ୍କୁ ଯଦି ଉତ୍ତରରେ ବରଫ ପଡ଼ୁଥିବା ରାଜ୍ୟକୁ ପଠେଇ ଦିଆହୁଏ, ସେ ସେଠାକାର ଲୋକଙ୍କର ମଙ୍ଗଳ କରିବେ ।" ରାଜା ସେମାନଙ୍କୁ ପ୍ରଚୁର ଅର୍ଥ ଦେଇ ବିଦାୟ ଦେଲେ ।

ଏହା ଭିତରେ କିଛିଦିନ କଟିଗଲା । ରାଜକୁମାର ମଧ୍ୟ ଟିକିଏ ବଡ଼ ହୋଇଗଲେଣି । ନିଜର କାମ ନିଜେ କରିପାରିବାର ଶିକ୍ଷା ତାଙ୍କୁ ପିଲାଟି ଦିନରୁ ଦିଆହେଉଥିଲା ।

ବିକଳାଙ୍ଗ ପିଲା ପ୍ରତି ବାପାମାଙ୍କ ଶ୍ରଦ୍ଧା ବେଶୀ । ସେମାନେ ତାକୁ ପାଖରୁ ଛାଡ଼ିବାକୁ ଚାହାନ୍ତି ନାହିଁ । ତା'ର ବହୁତ ଯତ୍ନନିଅନ୍ତି । ବୟସ ବଢ଼ିବା ସାଙ୍ଗେ ସାଙ୍ଗେ ରାଜା ଓ ପାଟରାଣୀଙ୍କର ମାୟା, ମମତା ପୁଅ ପ୍ରତି ଖୁବ୍ ବଢ଼ିଗଲା ।

ପ୍ରସେନ୍‌ଜିତ୍‌ଙ୍କ ଆଗରେ ଦୁଇଟି ସମସ୍ୟା । ପିଲାଟିକୁ ଏକା ପଠେଇଦେଲେ ତା'ର ଅବସ୍ଥା କ'ଣ ହେବ ସେ ନିଜେ ବି ଭାବିପାରୁ ନ ଥିଲେ । ତାଙ୍କୁ ସବୁ ଅନ୍ଧାର ଦେଖାଯାଉଥିଲା ।

ଏଣେ ପିଲାଟିକୁ ରଖିଲେ, ଜ୍ୟୋତିଷଙ୍କ କଥାନୁସାରେ ସେ ସୃଷ୍ଟି କରିବ ବିପ୍ଳବ । ତାଙ୍କୁ ଆଉ ତାର ଭାଇମାନଙ୍କୁ ମାରିବ । ଦେଶ ଛାରଖାର ହୋଇଯିବ । ବଂଶର ମର୍ଯ୍ୟାଦା ବି ହାନି ହେବ । ତୃଏତ, ରାଜ୍ୟ ମଧ୍ୟ ଧ୍ୱଂସ ହୋଇପାରେ ।

ଦୁଇଟି ବିପଦ ମଧ୍ୟରୁ, ବିବେକୀ କମ୍ ବିପଦଟିକୁ ଗ୍ରହଣ କରେ । ସେଥିପାଇଁ ରାଜା ପ୍ରସେନ୍‌ଜିତ୍ ନିଜ ଗୁଣ୍ଡକୁ ପଥର କରି ପିଲାଟିକୁ ଉତ୍ତରରେ ଥିବା ବରଫ ଦେଶକୁ ପଠାଇବାକୁ ସ୍ଥିର କଲେ ।

ରାଜାଙ୍କର ଆଦେଶ ଅନୁସାରେ ସୁନାସିଂହାସନଟିଏ ତିଆରି ହେଲା । କେତେଜଣ ବାହକ ଆଉ ଜଣେ ବିଶ୍ୱସ୍ତ ରାଜକର୍ମଚାରୀଙ୍କୁ ଆଗରୁ ପ୍ରସ୍ତୁତ କରାଯାଇଥିଲା । ଗୋଟିଏ ଶୁଭଦିନ ଦେଖି ରାଜ-କୁମାରଙ୍କୁ ସିଂହାସନରେ ବସାଇ ଦିଆଗଲା । ଏଇ ସିଂହାସନକୁ ନେଇ ଉତ୍ତରରେ ଥିବା ବରଫ ଦେଶର ଏକ ନିକାଞ୍ଚନ ଜାଗାରେ ରଖି ଆସିବାକୁ, ପ୍ରସ୍ତୁତଥିବା ବାହାକ ଆଉ ରାଜ-କର୍ମଚାରୀଙ୍କୁ ଆଦେଶ ହେଲା ।

କୁମାର ବସିଥିବା ସୁନା ସିଂହାସନକୁ ଧରି ସେମାନେ ବାହାରିଲେ । ଚାରିଜଣ ବାହକ ସିଂହାସନ କାନ୍ଧେଇଥାନ୍ତି । ଅନ୍ୟମାନେ ସାଥିରେ ଥାଆନ୍ତି । ବିଲ, ବଣ, ପାହାଡ଼, ନଈ ପାରି ହୋଇ ସେମାନେ ଉତ୍ତର ଦିଗକୁ ଚାଲିଥାଆନ୍ତି । ଶେଷରେ ସେମାନେ ତିବ୍ବତ ଦେଶରେ ପହଞ୍ଚିଲେ । ସେଠି ଚାରିଆଡ଼େ ବରଫ । ରାଜକର୍ମଚାରୀଙ୍କ ଆଦେଶାନୁସାରେ ସେହିଠାରେ ସିଂହାସନଟି ରଖାଗଲା । ନିଚ୍ଛାଟିଆ ସ୍ଥାନଟିଏ ସେମାନେ ଖୋଜିଲେ । ଶେଷରେ ଗୋଟିଏ ପର୍ବତ ଗୁମ୍ଫା ପାଇଲେ ।

ସେଇଠି ସିଂହାସନଟିକୁ ରଖିଦେଲେ । ବୃଦ୍ଧଗଣ୍ଡୀକୁ ସେଇ ଗୁମ୍ଫାରେ ଏକୁଟିଆ ଛାଡ଼ି ସେମାନେ ରାଜ୍ୟକୁ ବାହୁଡ଼ି ଆସିଲେ ।

ସେତେବେଳକୁ ସୂର୍ଯ୍ୟାସ୍ତ ଅଳ୍ପ ବାକି । ବରଫାବୃତ ପର୍ବତ ଉପରେ ଅସ୍ତକାଳୀନ ଲାଲିମାରଖରା ଅପୂର୍ବ ସୌନ୍ଦର୍ଯ୍ୟ ସୃଷ୍ଟି କରୁଥାଏ । ଛୋଟ ପିଲାଟି ସିଂହାସନରେ ଚୁପ୍‌ଚାପ୍ ହୋଇ ବସି ତାକୁ ଅନାଇଥାଏ ।

ହଠାତ୍ ପାଗ ଖରାପ ହୋଇଗଲା । ଖୁବ୍ ଜୋରରେ ପବନ ବୋହିବାକୁ ଆରମ୍ଭ କଲା । ଭୟଙ୍କର ସେ ପବନ । ଗଛଗୁଡ଼ିକ ଉପୁଡ଼ି ପଡ଼ୁଥାଆନ୍ତି । ଖଣ୍ଡ ଖଣ୍ଡ ବରଫ ମଧ୍ୟ ପଡ଼ୁଥାଏ ।

କେତେକ ଶିକାରୀ ସେତିକିବେଳେ ସେବାଟେ ଘରକୁ ଫେରୁଥିଲେ । ଏଇ ବତାସରୁ ରକ୍ଷା ପାଇବା ପାଇଁ ସେମାନେ ରାଜକୁମାର ବସିଥିବା ଗୁମ୍ଫାକୁ ଧାଇଁଲେ । ଅଚିହ୍ନା ପିଲାଟିଏ ସୁନା ସିଂହାସନରେ ବସିଥିବା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ତାକୁ ପଚାରିଲେ "ତମେ କିଏ ?"

ପିଲାଟି ସେମାନଙ୍କ କଥା କିଛି ବୁଝିଲା ନାହିଁ । କେବଳ ଆକାଶ ଆଡ଼କୁ ହାତ ଦେଖାଇଲା । କ୍ରମେ ବହୁତ ଲୋକ ସେଠାରେ ରୁଣ୍ଡ ହୋଇଗଲେ । ଯେତେଥର ତାର ଆସିବା କଥା ପଚରାହୁଏ, ସେ ସେତେଥର ଆକାଶକୁ ହାତ ଦେଖାଏ ।

ସେ ଜାଗାଟି ନିର୍ଜନ ବଣ ଭିତରେ । ଲୋକମାନଙ୍କର ସେ ବାଟେ ବିଶେଷ ଯିବା ଆସିବା ନାହିଁ । ସୁନା ସିଂହାସନରେ କିଏ ବା କାହା ପିଲାକୁ ବସାଇ ଜନଶୂନ୍ୟ ପର୍ବତ ଗୁମ୍ଫାରେ ଛାଡ଼ିଦେଇଯିବ ? ଲୋକମାନେ ଏ ବିଷୟରେ ବହୁ ଆଲୋଚନା

କଲେ । ଶେଷକୁ ସ୍ୱର୍ଗରୁ କେହି ଜଣେ ଦେବଦୂତ ଆସୁଛନ୍ତି ବୋଲି ସେମାନେ ଧରିନେଲେ ।

ସେତେବେଳକୁ ତିବ୍ବତୀୟମାନଙ୍କର ରାଜା ନ ଥାଆନ୍ତି । ଭଗବାନ ତାଙ୍କପାଇଁ ସୁନା ସିଂହାସନରେ ରାଜା ପଠେଇଛନ୍ତି ବୋଲି ସେମାନେ ଭାବିଲେ । ତାପରେ ଚାରିଜଣ ଲୋକ ଆସି ସିଂହାସନଟିକୁ ବେକରେ ଝୁଲାଇ ନଗରକୁ ନେଇଗଲେ । ତାଙ୍କୁ କୁହାଗଲା—"ନ୍ୟାଠି ସାମ୍ପୋ" ବା "ବେକରେ ଝୁଲି ହୋଇଥିବା ସିଂହାସନାରୂଢ଼ା ରାଜା ।"

ଅଭିଷେକ ଶେଷ ହେଲା । ବୁଦ୍ଧଶ୍ରୀ ସେ ଦେଶର ରାଜା ହେଲେ । ଏ ଖବର କୋଶଳରେ ପହଞ୍ଚିଲା । ରାଜା ଓ ପାଟରାଣୀ ଆଶ୍ୱସ୍ତ ହେଲେ । ପ୍ରଜାମାନେ ବି ଭାରି ଖୁସି । ଲୋକେ କହିଲେ ଭଗବାନଙ୍କ ଯାହା ବିଚାର, ତାହାହିଁ ଘଟେ ।

ବୁଦ୍ଧଶ୍ରୀ ବହୁଦିନ ତିବ୍ବତରେ ଶାସନ କଲେ । ତାଙ୍କ ସମୟରେ ତିବ୍ବତ ବହୁତ ଉନ୍ନତି କରିଥିଲା । ପ୍ରଜାମାନେ ଖୁସିରେ ଥିଲେ । ତାଙ୍କର ବିଜ୍ଞତା, ନ୍ୟାୟଶୀଳତା ଓ ପ୍ରଜା-ବତ୍ସଳତା ଏବେ ବି ତିବ୍ବତର କିମ୍ବଦନ୍ତୀ ।

———

# ଆଜ୍ଞାନୁବର୍ତ୍ତିତା

ପୁରୁଣା ଦିନର କଥା । ଗୁଡ଼୍‌କର ଗୋଟିଏ ବୌଦ୍ଧ ମଠ । ସେଠାର ଲାମା ର ବହୁତ ଶିଷ୍ୟ । ନାମ୍‌ଗ୍ୟାଲ୍ ତାଙ୍କ ମଧ୍ୟରୁ ଅନ୍ୟତମ । ନାମ୍‌ଗ୍ୟାଲ ଯୁବକ । ସେ ମଠରେ ଥାଏ । କୁଆଡ଼କୁ ଯାଏ ନାହିଁ ।

ସେଦିନ ଲାମାଙ୍କର ଆଦେଶ—ନାମ୍‌ଗ୍ୟାଲ ଭିକ୍ଷାକରି ଯିବ । ଗୁରୁଙ୍କ ଆଦେଶରେ ଥାଳଟିଏ ଧରି ନାମ୍‌ଗ୍ୟାଲ ବାହାରି ପଡ଼ିଲା । ପାଖ ଗାଁରେ ସେ ପହଞ୍ଚିଗଲା । ସେ ଗାଁରେ ବହୁତ ଘର । ଦ୍ୱାର ଦ୍ୱାର ସେ ଭିକ୍ଷା କଲା । ସେ ସୁଶୃଙ୍ଖଳିତ । ଭିକ୍ଷା ମାଗିବାରେ ବି ଗୋଟିଏ ନିର୍ଦ୍ଦିଷ୍ଟ ଧାରା ସେ ଅନୁସରଣ କରେ । ତେଣୁ ତାର ଡେରି ହୁଏ । ଯାହାହେଉ, ଗାଁଟି ସରି ଆସିଲା । ମଠକୁ ତାର ଫେରିବାର କଥା ।

ହଠାତ୍ ସେ ଦେଖିଲା, ଗାଁଠାରୁ ଗୁଡ଼ି ଅଳ୍ପଦୂରରେ ଘରଟିଏ ଅଛି । ସେଠୁ ବି ତ ଭିକ୍ଷା କରିବାକୁ ହେବ । ତେଣୁ ସେ ସେଠାକୁ ଗଲା ।

ଘରଟି ଅତି ପୁରୁଣା । ଅବସ୍ଥା ତାର ଶୋଚନୀୟ । ଭିତରୁ ତାର କବାଟ ବନ୍ଦ । ଦୁଆର ମୁହଁରେ ଠିଆ ହୋଇ ସେ ଭିକ୍ଷା-ମାଗିଲା । ଘରର କବାଟ ଖୋଲି ବୁଢ଼ୀଟିଏ ବାହାରି ଆସିଲା । ବାଳ ତାର ଝୋଟପରି ଧଳା । ପାଟିରେ ଦାନ୍ତଟିଏ ବି ନାହିଁ ।

ସୁନ୍ଦର ଯୁବକ ଭିକ୍ଷୁକୁ ଦେଖି ସେ ଖୁବ ଖୁସି । ପାକୁଆ ପାଟିରେ ତାର ହସ । ଘର ଭିତରକୁ ଯାଇ ଧାଙ୍ଗେ ଧାଙ୍ଗେ ହାତରେ କଣ୍ଟି ଛତୁ ନେଇ ଆସିଲା । ଛତୁତକ ଭିକ୍ଷୁର ଥାଳରେ ପକାଇ ଦେଇ ଛତୁବୋଳା ହାତକୁ ତାର ଶାଲରେ ମାଇଦେଲା । ଦଣ୍ଡେ ତାକୁ ଚାହିଁ କହିଲା "ବାଃ ! କି ସୁନ୍ଦର ଚେହେରା ତୋର ; ନେଣ୍ଡେ ବଡ଼ିଆ ଲୁ ହୋଇଛୁ ।"

ନାମ୍‌ଗ୍ୟାଲ୍ ମଠରେ ପହଞ୍ଚିଲା ବେଳକୁ ପ୍ରାୟ ସନ୍ଧ୍ୟା । ପ୍ରଥମ ଦିନର ଭିକ୍ଷା । ସେଥିରେ ପୁଣି ତାର ଅନ୍ନ ଭରପୁର । ତାର ସଫଳତା ପାଇଁ ସେ ଖୁବ ଖୁସି । ତେଣୁ ସେ ସିଧା ଲାମାଙ୍କ ପାଖକୁ ଗଲା ।

ଲାମା ସେତେବେଳେ ପ୍ରାର୍ଥନା କରୁଥାଆନ୍ତି । ନାମ୍‌ଗ୍ୟାଲ୍ ତା ଭିକ୍ଷାପୂର୍ଣ୍ଣ ପାତ୍ରଟି ଲାମାଙ୍କ ଆଗରେ ଥୋଇ ବସିପଡ଼ିଲା । ପରବର୍ତ୍ତୀ ଆଦେଶପାଇଁ ତାର ଅପେକ୍ଷା ।

ଲାମାଙ୍କ ପ୍ରାର୍ଥନା ଶେଷହେଲା । ବଡ଼ ପାତ୍ରରେ ତାଙ୍କ ପାଇଁ ଚା ଥୁଆ ହୋଇଥାଏ । ସେ ତାକୁ ପିଇଲେ ।

ଏବେ ବି ନାମ୍‌ଗ୍ୟାଲ୍‌ର ଶାଲ୍‌ରେ ବୁଢ଼ୀର ଛତୁ ହାତର ଦାଗ ପରିଷ୍କାର । ହଠାତ୍ ଲାମାଙ୍କ ଆଖି ସେଠାରେ ପଡ଼ିଗଲା ସେ ଗମ୍ଭୀର ହୋଇଗଲେ । ସେ ନାମ୍‌ଗ୍ୟାଲ୍‌ର ଭିକ୍ଷା ପୂର୍ଣ୍ଣ ଅନ୍ନକୁ ଟିକିଏ ବି ଅନେଇଲେ ନାହିଁ । ବରଂ କହିଲେ "ବାପା ! ଆଜି ରାତିରେ ତୋ ଉପରେ ଏକ ବଡ଼ ବିପଦ ପଡ଼ିବ ! ମୁଁ ଯାହା କହୁଛି, ତା' ଯଦି ତୁ କରୁ ; ଭଗବାନ ବୁଦ୍ଧଙ୍କ ଦୟାରୁ ତୁ ଉଦ୍ଧାର ପାଇପିବୁ ।"

ଲାମା ଦଉଡ଼ିଟିଏ ମଗାଇଲେ । ସେଥିରେ ସାତୋଟି ଗଣ୍ଠି ପକାଇ ନିଜେ ନାମ୍‌ଗ୍ୟାଲ ବେକରେ ଗଳାଇ ଦେଲେ । ତା' ପରେ କହିଲେ—"ବାପା ! ତୁ ଏଇନେ ସିଧା ସିଧା ଗାଁ ମୁଣ୍ଡକୁ ଯା । ସେଠି କେତୋଟି ତମ୍ବୁ ପଡ଼ିଛି । ତା' ଭିତରୁ ଶେଷ ତମ୍ବୁରେ ରାତିଟି ଲୁଚ ।"

ଗାଁ ମୁଣ୍ଡ ତମ୍ବୁ ମଠଠାରୁ ବେଶ୍ ଦୂର । ସେତେବେଳକୁ ରାତି ମାଡ଼ି ଆସିଲାଣି । ଘୁରୁଆଡ଼ ଅନ୍ଧାର । ମୁହଁକୁ ମୁହଁ ଦିଶୁନଥାଏ । ପର୍ବତଗୁଡ଼ିକ ବରଫାବୃତ । ଗାଢ଼ କଳାମେଘ ଘୋଟି ଯାଇଛି । ଶୃଙ୍ଗଗୁଡ଼ିକ ଜଣାପଡ଼ୁ ନାହିଁ । ଥଣ୍ଡା ପବନ ଜୋରରେ ସୁ ସୁ ହୋଇ ଗର୍ଜୁଛି । ନାମ୍‌ଗ୍ୟାଲ ତା' ମୁଣ୍ଡକୁ ଶାଲରେ ଘୋଡ଼େଇ ଥାଏ । ତଥାପି ଶୀତରେ ସେ ଥରୁଥାଏ । ବହୁକଷ୍ଟରେ ସେ ତମ୍ବୁ ନିକଟରେ ପହଞ୍ଚିଲା ।

ବାହାରେ କେହି ନ ଥିଲେ । ତେଣୁ ସେଠାରେ ସେ ଠିଆହୋଇ ରହିଲା । କୁକୁରଟିଏ ତାକୁ ଦେଖି ଭୁକିଉଠିଲା । ତମ୍ବୁ ଭିତରେ ସ୍ତ୍ରୀ ଲୋକଟି ଶାଲ ବୁଣୁଥାଏ । କୁକୁର ଭୁକାରେ ସେ ବାହାରକୁ ଉଠି ଆସିଲା । ନାମ୍‌ଗ୍ୟାଲକୁ ଦେଖି ପଚାରିଲା— "ପୁଅ, ତୋର କ'ଣ ଦରକାର ?"

ନାମ୍‌ଗ୍ୟାଲ କହିଲା—"ମୁଁ କିଛି ଖାଇନାହିଁ । ମୋତେ ଭାରି ଭୋକ । ଶୀତରେ ବି ମୁଁ ଆଉ ଚାଲିପାରୁ ନାହିଁ । ଥରୁଛି । ମୋର ମଠକୁ ଯିବାର କଥା । ମୁଁ ଏଠାରେ ଅଟକି ଯାଇଛି ।"

ସେ ତାକୁ ଭିତରକୁ ନେଇ ନିଆଁ ପାଖରେ ବସାଇଲା । ପ୍ରଥମେ ଘିଅ ଓ ଚାପରେ ଛତୁରେ ଛେନା ମିଶାଇ ତାକୁ ଖାଇବାକୁ ଦେଲା । ତାର ମନେ ହେଲା, ସ୍ତ୍ରୀ ଲୋକଟି ଭାରି ଦୟାଳୁ ।

ନାମ୍‌ଗ୍ୟାଲ ନଆଁ ପାଖରେ ବସି ଆରାମରେ ଖାଇଲା । ସେ ବନପାକ ବୁଲି ବୁଲି କ୍ଲାନ୍ତ । ପୁଣି ବାଟରେ ଆସିଲାବେଳେ ଥଣ୍ଡା ପବନ ମାଡ଼ ଖାଇ ଖାଇ ହାଲିଆ । ଯେମିତି ସେ ଖାଇଦେଇଛି, ଆଖି ତା'ର ବନ୍ଦ ହୋଇ ଆସିଲା । ସେ କହିଲା—"ମାଉସୀ ! ମୁଁ ବଡ଼ କ୍ଲାନ୍ତ । ମୋ ଦେହ ଜମା ଚଳୁ ନାହିଁ । ମୁଁ ଆଜ କୁଆଡ଼େ ଯାଇପାରିବ ନାହିଁ । ଏଇଠି ରାତିକ ଶୋଇଯାଉଛି ।"

ସ୍ତ୍ରୀ ଲୋକଟିର ନାଁ କୋରଲ୍ । ସେ କହିଲା—"ଅନେକ ଅତିଥି ଏଇନେ ଏଠାକୁ ଆସିବେ । ଏଠାରେ ଶୋଇଲେ ତୋର ଅସୁବିଧା ହେବ ।"

ତାପରେ କୋରଲ୍ ଗୋଟିଏ ବଡ଼ ସିନ୍ଦୁକ ପାଖକୁ ତାକୁ ନେଇଗଲା । ସିନ୍ଦୁକଟି ବେଶ୍ ବଡ଼ । ଜଣେ ମଣିଷ ତା' ଭିତରେ ଆରାମରେ ଶୋଇପାରିବ । ସିନ୍ଦୁକ ଖୋଲି ତା' ଭିତରେ ନାମ୍‌ଗ୍ୟାଲକୁ ଶୋଇବାକୁ ସେ କହିଲା ।

କୋରଲ୍‌ର କଥାନୁସାରେ ସେ ସିନ୍ଦୁକ ଭିତରକୁ ଯାଇ ଶୋଇଲା । କୋରଲ୍ ସିନ୍ଦୁକଟି ବନ୍ଦ କରିଦେଲା । ଏସବୁ ଘଟଣା ଦେଖି ନାମ୍‌ଗ୍ୟାଲର ନିଦ ଛୁଟିଗଲା । ସେ ଚେଇଁ କରି ପଡ଼ିରହିଲା ।

ବାହାରେ ପବନର ଭୟଙ୍କର ଗର୍ଜନ । ତମ୍ବୁଟି ଜୋରରେ ଦୋହଲୁଥାଏ । ଭିତରେ ବହୁତ ପାଟିଭୁଣ୍ଡ ଶୁଣି ନାମଗ୍ୟାଲ୍ ସିନ୍ଦୁକର ଫାଟବାଟେ ବାହାରକୁ ଅନାଇ ଦେଖିଲା, ତମ୍ବୁ ଭିତରେ ବହୁତ ସ୍ତ୍ରୀଲୋକ । ସେମାନେ ସୁନ୍ଦର ସୁନ୍ଦର ଲୁଗା ପିନ୍ଧିଥାଆନ୍ତି । ତା'ର କୌତୁହଳ ହେଲା । ସେ ଏକା-ଲୟରେ ଚାହିଁ ରହିଲା ।

ନାମ୍‌ଗ୍ୟାଲର ଆଖି ଆଗରେ ତମ୍ବୁଟା ବଢ଼ିବାକୁ ଲାଗିଲା । ବେଲୁନ୍‌ଟି ଫୁଙ୍କିଲେ ଯେମିତି ଫୁଲିଉଠେ । ଏହା ବଢ଼ି ବଢ଼ି ଖୁବ୍ ଲମ୍ବିଥାଏ । ଶେଷକୁ ତମ୍ବୁଭିତର ଗୋଟିଏ ପଡ଼ିଆରେ ପରିଣତ ହୋଇଗଲା । ସ୍ତ୍ରୀ ଲୋକମାନେ ଆନନ୍ଦରେ ସେ ପଡ଼ିଆରେ ବେଶ୍ ବୁଲା ଚଲା କରୁଥାଆନ୍ତି । ଗପରେ ସେମାନେ ବ୍ୟସ୍ତ । ମଝିରେ ମଝିରେ ବଡ଼ ପାଟିରେ ହସୁଥାଆନ୍ତି । କିନ୍ତୁ ସବୁବେଳେ ଦୁଆର ଆଡ଼କୁ ସେମାନଙ୍କର ନଜର । ଜଣାପଡ଼ୁଥାଏ, ସେମାନେ ସତେ ଯେମିତି କାହାକୁ ଅପେକ୍ଷା କରିଛନ୍ତି ।

ଠିକ୍ ସେତିକିବେଳେ ତମ୍ବୁର ପରଦା ଆଡ଼େଇ ବୁଢ଼ୀଟିଏ ପଶିଆସିଲା । ସେ ଖୁବ୍ ଚିନ୍ତିତ ଓ ବିବ୍ରତ ।

ନାମ୍‌ଗ୍ୟାଲ୍ ତାକୁ ସାଙ୍ଗେ ସାଙ୍ଗେ ଚିହ୍ନିପକାଇଲା । ସକାଳେ ଏଇ ବୁଢ଼ୀ ତାକୁ ଭିକ୍ଷା ଦେଇସାରି ତା' ଛିଣ୍ଡା ହାତକୁ ତା' ଶାଲରେ ଲଗେଇ ଦେଇଥିଲା ।

ବୁଢ଼ୀକୁ ଦେଖି କୋରସ୍ ଆସି ବସିଲା ସିନ୍ଦୁକ ଉପରେ । ତା'ରି ଭିତରେ ନାମ୍‌ଗ୍ୟାଲ ଶୋଇଥାଏ । ସେ ସେଇଠି ବସି କିଏ ଆସିଛି ନ ଆସିଛି ଜଣ ଜଣ କରି ପଚାରି ବୁଝୁଥିଲା । ତାପରେ ପଡ଼ିଲା ବୁଢ଼ୀର ପାଳି । ବୁଢ଼ୀକୁ ଦେଖି ସେ ରାଗରେ ନିଆଁ ହୋଇଗଲା । ତାକୁ ଉଚ୍ଚ ଓ କଡ଼ାସ୍ୱରରେ ପଚାରିଲା— "ଏକୁଟିଆ ତ ଆସିଲୁ । ତାକୁ କାହିଁକି ସାଥିରେ ଆଣିଲୁ ନାହିଁ ।"

ବୁଢ଼ୀଟି କାନ୍ଦୁଥାଏ । କଣ୍ଠ ତା'ର ବାଷ୍ପରୁଦ୍ଧ । ସ୍ୱରରେ ଆର୍ତ୍ତତାର ଲକ୍ଷଣ । ବୁଢ଼ୀଟି କହୁଥାଏ "ମୁଁ ସୁନ୍ଦର ଝିଅଟିଏ ବାଛିଥିଲି । ତା' ଦେହରେ ଛିଣ୍ଡା ଚିହ୍ନ ମଧ୍ୟ ଦେଲି । ଏଇ ତମ୍ବୁଠ

ଛଡ଼ା ମୁଁ ମଠ ପରେ ମଠ, ଜମ୍ବୁ ପରେ ଜମ୍ବୁ, ଘର ପରେ ଘର ତାକୁ ଖୋଜୁଛି । ତେବେ ବି ତାର ପତ୍ତା ପାଇଲି ନାହିଁ ।

କେହି ତା' କଥାକୁ ବିଶ୍ୱାସ କଲେ ନାହିଁ । ହଠାତ୍ ସମସ୍ତେ ଏକାଠି ପାଟିକରି ଉଠିଲେ । କୋରଲ୍ ତାଙ୍କୁ ଶାନ୍ତ ହେବାକୁ କହିଲା । ତା'ପରେ ବୁଢ଼ୀକୁ ପ୍ରତିଜ୍ଞା କରିବାକୁ ଆଦେଶ ଦେଲା ।

ବିଧି ଅନୁସାରେ ବୁଢ଼ୀଟି ପ୍ରତିଜ୍ଞାକରି କହୁଥାଏ "ମୁଁ ଯାହା କହୁଛି ସତ କହୁଛି ।" ଏମିତି କହି ଛ'ଥର ତାର ଗାଉନ୍‌କୁ ଝାଡ଼ିଦେଲା ।

ବୁଢ଼ୀ ଗାଉନ୍‌ଟି ଯେମିତି ଝାଡ଼େ, ନାମ୍‌ଗ୍ୟାଲ୍ ବେକର ଗୋଟିଏ ଗଣ୍ଠି ସେମିତି ଖୋଲିଯାଏ । ଏମିତି ଭାବରେ ଛଟି ଗଣ୍ଠି ଖୋଲିଗଲା । ଆଉ ଗୋଟିଏ ଗଣ୍ଠି ବାକି । ନାମ୍‌ଗ୍ୟାଲ୍ ଭୟରେ ଥରୁଥାଏ । ସେ ଭଗବାନ୍ ବୁଦ୍ଧଙ୍କୁ ଡାକୁଥାଏ । ବାରମ୍ବାର ତାର ମିନତି—"ହେ ଭଗବାନ୍ ବୁଦ୍ଧ ! ବୁଢ଼ୀ ଯେମିତି ତା' ଗାଉନ୍‌କୁ ଆଉ ନ ଝାଡ଼ୁ ।" ତାର ଭୟ ଯେ, ବାକି ଗଣ୍ଠିଟି ଖୋଲିଗଲେ ତାର ଅବସ୍ଥା ସରିଯିବ ।

ଭଗବାନ୍ ବୁଦ୍ଧ ତା ଗୁହାରି ଶୁଣିଲେ । ବୁଢ଼ୀ ଆଉ ତା' ଗାଉନ୍ ଝାଡ଼ିଲା ନାହିଁ । ସେ ରକ୍ଷା ପାଇଗଲା ।

କୋରଲ୍ ବୁଢ଼ୀର କୈଫିୟତ୍ ଗ୍ରହଣ କରିବାକୁ ନାରାଜ । ସାଙ୍ଗେ ସାଙ୍ଗେ ଆଉ ଜଣଙ୍କୁ ଆଣିବାକୁ ତାର ଆଦେଶ । ବୁଢ଼ୀଟି ଭାଙ୍ଗିପଡ଼ିଲା । ମନଦୁଃଖରେ ସେ ଘରକୁ ଫେରିଲା । ତା ଘରେ ତ ଆଉ କେହି ନଥିଲେ । ବାକି କେବଳ ବୁଢ଼ାଟି—ତା'

ସ୍ୱାମୀ । ଉପାୟ ତା'ର ନ ଥିଲା । ସେ ଘ୍ୱ'ରେ ଔଷଧ ମିଶାଇ ବୁଢ଼ାକୁ ପିଇବାକୁ ଦେଲା । ବୁଢ଼ା ଘ୍ୱ ଖାଇ ଅଚେତ । ତାପରେ ଘୋଷାର୍ ଘୋଷାର୍ ତାକୁ କୋରଲ୍‌ର ତମ୍ବୁକୁ ନେଇଆସିଲା ।

ପୁରୁଷଟିକୁ ଦେଖିଲାମାତ୍ରେ ସ୍ତ୍ରୀ ଲୋକମାନଙ୍କ ଆନନ୍ଦ କହିଲେ ନସରେ । ତା' ଉପରେ ସମସ୍ତେ ଝୁଙ୍କି ପଡ଼ିଲେ । ସମସ୍ତଙ୍କ ହାତରେ ତୀକ୍ଷ୍ଣ ଛୁରୀ । ବୁଢ଼ାଟିକୁ ଟିକ ଟିକ କରି କାଟି ପକାଇଲେ । ତା' ପରେ ଆନନ୍ଦରେ ବସି ତା' ମାଂସକୁ ଖାଇଦେଲେ ।

ଝିଅ ସରିଲା ପରେ ସମସ୍ତେ ଚାଲିଗଲେ । ନାମ୍‌ଗ୍ୟାଲ୍ ସବୁ ଦେଖୁଥାଏ । ସେଠୁ କେମିତି ଖସି ପଳାଇବ, ତାହାହିଁ ତାର ଚିନ୍ତା । ସେ ସୁଯୋଗ ଉଣ୍ଡୁଥାଏ । କୋରଲ୍ ଶୋଇଯାଇଥାଏ । ଏଇ ମଉକାରେ ସେ ତା' ସିନ୍ଦୁକରୁ ପଦାକୁ ବାହାରି ଆସିଲା । ତାପରେ ଜୀବନ ବିକଳରେ ମଠ ଆଡ଼କୁ ଦୌଡ଼ିଲା ।

ପରଦିନ ବୁଢ଼ାର ମୃତ୍ୟୁ ଖବର ଚାରିଆଡ଼େ ବ୍ୟାପିଗଲା । ସମସ୍ତେ ବୁଢ଼ୀ ପାଖକୁ ଆସି ସମବେଦନା ଜଣାଇଲେ । ସମସ୍ତଙ୍କ ମୁହଁରେ ଗୋଟିଏ କଥା—ଆହା ! ବୁଢ଼ାଟି ତ ମରିଗଲା । ବିଚାରି ବୁଢ଼ୀଟି ବର୍ତ୍ତମାନ ଏକାକୀ ।

———

# ଶେର୍‌ବାଲ୍ ଓ ଯୁର୍‌ବାଲ୍

କେତେ କାଳର କଥା, କହିହେବ ନାହିଁ । ଯେଉଁ ସାଇଜର କଥା କୁହାଯାଉଛି, ସେଠି ବର୍ଷା ଖୁବ୍ କମ୍ । ବର୍ଷକୁ ମୋଟେ ପାଞ୍ଚ ସେଣ୍ଟି ମିଟର ।

ସେଠି ନାହିଁ ନଈ କି ନାହିଁ ଝରଣା । ଅଛି, କୋଣେକୋଣରେ—ଏକ ନୀଳହ୍ରଦ । ସେହି ହ୍ରଦରୁ ପାଣି ଗଲେ, ଦେଶଟାଯାକ ଚଳେ । କିନ୍ତୁ ହ୍ରଦ ଘେରିଛି ଚଉପଟେ ପାହାଡ଼ । ବାଟ ଗୋଟିଏ, ସେଇବାଟେ ପାଣି କେବଳ ପଦାକୁ ଆସେ ।

ସେଇ ହ୍ରଦରେ ଦୁଇଟି ବେଙ୍ଗ ଥାଆନ୍ତି । ଗୋଟିକର ରଙ୍ଗ ସୁନେଲି, ନାଁ ତାର ଶେର୍‌ବଲ୍ । ଅନ୍ୟଟି ନୀଳକାନ୍ତ ରଙ୍ଗର । ନାଁ ତାର ଯୁର୍‌ବାଲ୍ । ବେଙ୍ଗ ଦୁଇଟି ବିରାଟ, ଅସାଧାରଣ, ଅଦ୍ଭୁତ ଓ ଭୟଙ୍କର । ହ୍ରଦର ପାଣି ସେମାନେ ନିୟନ୍ତ୍ରିତ କରନ୍ତି । ସେମାନେ ପାଣି ନ ଛାଡ଼ିଲେ, ଦେଶରେ ଭୟଙ୍କର ଦୁର୍ଭିକ୍ଷ ପଡ଼େ । ଲୋକମାନେ ପୋକ ମାଛି ପରି ମରିଯାଆନ୍ତି ।

ବେଙ୍ଗ ଦୁଇଟିଙ୍କର ଦାବୀ ମର୍ମନ୍ତୁଦ । ପ୍ରତିବର୍ଷ ମଣିଷଟିଏ ତାଙ୍କୁ ଖାଇବାକୁ ନ ଦେଲେ, ବେଙ୍ଗ ଦୁଇଟି ପାଣି ଛାଡ଼ିବେ ନାହିଁ । ଏହାହିଁ ଥିଲା ତାଙ୍କ ସର୍ତ୍ତ ।

ଲୋକମାନଙ୍କର ଉପାୟ ନଥିଲା । ରାଜା ବି ଅସହାୟ । ପ୍ରତିବର୍ଷ ହ୍ରଦ ଭିତରେ ଜଣକୁ ଝାସ ଦେବାକୁ ହୁଏ । ରାଜାଘର ବି ବାଦ୍‌ଯାଏ ନାହିଁ ।

ସେ ବଡ଼ ରାଜାଘରର ଝିଅ । ରାଜପରିବାରର ସମସ୍ତେ ପ୍ରାର୍ଥନା ଘରେ ରୁଣ୍ଡ । ଲାମା ବି ସେଠି ଉପସ୍ଥିତ । ଲାମାଙ୍କୁ ନାଁ ବାଛିବାର ଦାୟିତ୍ୱ ଦିଆ ହୋଇଥାଏ । ସେ ବି ଏପରି ଏକ ହୃଦୟହୀନ କାର୍ଯ୍ୟ କରିବାକୁ ଅନିଚ୍ଛୁକ । କିନ୍ତୁ ଉପାୟ ନାହିଁ । ଦେଶପାଇଁ ଜାତିପାଇଁ ତାଙ୍କୁ ଏଇ ହୃଦୟହୀନ କାର୍ଯ୍ୟ କରିବାକୁ ହେବ । କିନ୍ତୁ ଯେତେବେଳେ ତାଙ୍କର ନିଷ୍ପତ୍ତି ଉପରେ ଅନ୍ୟର ଜୀବନ ମରଣ ସମସ୍ୟା ନିର୍ଭର କରୁଛି, ସେ ନିରପେକ୍ଷ ହେବାକୁ ଚାହୁଁଥିଲେ । ତେଣୁ ରାଜପରିବାରର ସମସ୍ତଙ୍କ ନାଁ ଗୋଟିଏ ଗୋଟିଏ ଛୋଟ କାଗଜରେ ଲେଖି ସେ ଏକାଠି କରିଦେଲେ । ତାପରେ ତାଙ୍କର ଆଦେଶରେ ତାଙ୍କ ଆଖିରେ ଗୋଟିଏ କଳାପଟି ବନ୍ଧାଗଲା । ସେ ସବୁ କାଗଜକୁ ଗୋଟିଏ ପାତ୍ରରେ ରଖି ବାରମ୍ବାର ଫେଣ୍ଟୁଥାଆନ୍ତି । ତାପରେ ବାହାରୁ ଗୋଟିଏ ଲୋକକୁ ଡାକି କାଗଜଟିଏ ପାତ୍ରରୁ ଉଠେଇବାକୁ ଆଦେଶ ଦେଲେ ।

ଏସବୁ କାର୍ଯ୍ୟରେ ଲାମା ବ୍ୟସ୍ତ ଥିବାବେଳେ ରାଜାଙ୍କର ଭୟ କମ୍ବଲେ ନହରେ । ସେ ବରଡ଼ାପତ୍ର ପରି ଥରୁଥାଆନ୍ତି । ବାରମ୍ବାର ଭଗବାନ ବୁଦ୍ଧଙ୍କୁ ଡାକୁଥାଆନ୍ତି । ତାଙ୍କର ଗୋଟିଏ ପ୍ରାର୍ଥନା—ଗୋଟିଏ ଗୁହାରି—"ହେ ଭଗବାନ ବୁଦ୍ଧ ! ରାଜକୁମାରର ନାଁ ଯେପରି ନ ଉଠୁ ।" ମଝିରେ ମଝିରେ ପ୍ରାର୍ଥନା ଭିତରେ ତାଙ୍କର ଦୁଶ୍ଚିନ୍ତା ଚେଇଁଉଠେ, ତାହାହେଲେ ସେ କ'ଣ କରିବେ !

ଦୁଶ୍ଚିନ୍ତା ତାଙ୍କର ସତ୍ୟ ହୋଇଗଲା । ସତକୁ ସତ ରାଜକୁମାର କର୍ମୀଙ୍କ ନାଁ ଲିଖିତ କାଗଜଟି ଉଠିଲା । ରାଣୀ ଚିତ୍କାର କରି ତଳେ ପଡ଼ି ଅଚେତ ହୋଇଗଲେ । ବହୁ କଷ୍ଟରେ

ତାଙ୍କୁ ଚେତା କରାଗଲା । ରାଣୀଙ୍କୁ ରାଜା ସାନ୍ତ୍ୱନା ଦେଉଥାଆନ୍ତି । ନଦେଲେ ନ ଚଳେ । କିନ୍ତୁ ମନ ତାଙ୍କର ବିଷାଦମୟ । ଭାବୁଥାଆନ୍ତି—ଏ ଜୀବନ ତାଙ୍କର ତୁଚ୍ଛ, ନିରର୍ଥକ ।

ବାହାରେ ଅପେକ୍ଷାରତ ପ୍ରଜାପାଠକ । ଜିଗ୍‌ମୀଙ୍କ ପାଳି-ପଡ଼ିବା କଥା ଶୁଣି ଅନେକ କ୍ରନ୍ଦନରତ । ଏ ପ୍ରକାର ସ୍ଥିରୀକୃତ ନିଷ୍ପତ୍ତିକୁ ବଦଳାଇବା ପାଇଁ ମଧ୍ୟ କେତେକ ଦାବୀ କରୁଥାଆନ୍ତି । ପାତ୍ର ମନ୍ତ୍ରୀଗଣଙ୍କ ପରାମର୍ଶ ନିଆଗଲା । ରାଜା ପଦାକୁ ଆସି ସମବେତ ପ୍ରଜାମାନଙ୍କୁ କହିଲେ—"ମୁଁ ବୁଢ଼ା ହେଲିଣି । ମୃତ୍ୟୁ ଆଉ ବା କେତେଦିନ ! ମୋପରେ ଦେଶକୁ ଜିଗ୍‌ମୀ ଶାସନ କରିଥାଆନ୍ତା । ସେ ଚାଲିଗଲେ, ମୋ ଅନ୍ତେ କିଏସେ ରାଜା ହେବ ? ତେଣୁ ରାଜକୁମାର ବଦଳରେ ମୁଁ ମୋର ଜୀବନ ଉତ୍ସର୍ଗ କରିଦେଉଛି ।"

ପ୍ରଜାମାନେ ଏପ୍ରକାର ପ୍ରସ୍ତାବକୁ ସମର୍ଥନ ଜଣାଇଲେ । ସମବେତ ଜନତା ମଧ୍ୟରେ ଆନନ୍ଦର କୋଳାହଳ । ସାଧୁ ସାଧୁ ବୋଲି ଅନେକ କହିଲେ ।

ରାଜକୁମାର ସେଠି ଉପସ୍ଥିତ ଥିଲେ । ସେ ତ ଗୁଡ଼ିବାର ପାତ୍ର ନୁହନ୍ତି । ସେ ଭାରି ଜିଦ୍‌ଖୋର । ରାଜାଙ୍କ ପାଖକୁ ଧାଇଁଯାଇ ସେ କହିଲେ—"ବାପା ! ଲାମାଙ୍କ ନିଷ୍ପତ୍ତି ଭଗବାନ ବୁଦ୍ଧଙ୍କ ନାଁରେ ଉଦ୍ଦିଷ୍ଟ । ତେଣୁ ମୋର ଝାସଦେବା ଭଗବାନଙ୍କ ଇଚ୍ଛା । ମୁଁ ଦେଶର ମଙ୍ଗଳ ପାଇଁ ପ୍ରାଣ ଦେଉଛି । ଏହା ଏକ ପୁଣ୍ୟକାମ । ଏଥିରେ ବ୍ୟସ୍ତ ହେବାର କିଛି ନାହିଁ । ବରଂ ତୁମ ପୁଅ ଯେ, ସାହସର ସହିତ ମୃତ୍ୟୁମୁଖକୁ ଯାଉଛି, ଏଥିରେ ତୁମେ ଗର୍ବ କରିବାର କଥା । ତାଛଡ଼ା ମୁଁ ନ ଗଲେ, ଦେଙ୍ଗମାନେ ପାଣି ଗୁଡ଼ିବେ ନାହିଁ । ଦେଶରେ ଦୁର୍ଭିକ୍ଷ ପଡ଼ିବ । ଲୋକମାନେ ଭୋକ ମାଡ଼ିପଡ଼ି ମରିବେ ।"

ରାଜାଙ୍କର ତ ଆଉ ଉପାୟ ନ ଥିଲା । ବଡ଼ ଦୁଃଖରେ ସେ ଜଗ୍‌ମୀ କଥାରେ ରାଜି ହେଲେ । ତାକୁ ହ୍ରଦ ପାଖକୁ ଯିବାକୁ ଛାଡ଼ିଦେଲେ ।

ଓ୍ୟାଙ୍ଗ୍‌ଉସ୍‌ ଜଗ୍‌ମୀର ଅନ୍ତରଙ୍ଗ ବନ୍ଧୁ । ସେ ଭାରି ଧୂର୍ତ୍ତଲୋକ୍‌ । କିନ୍ତୁ ସେ ଅତ୍ୟନ୍ତ ଗରିବ । ତାର ଭଲ ଘରଟିଏ ବି ନାହିଁ । ସେ ଗୋଟିଏ ଭଙ୍ଗାଘରେ ରହେ । ଜଗ୍‌ମୀ ଝାସଦେବା ପୂର୍ବରୁ ଓ୍ୟାଙ୍ଗ୍‌ଉସ୍‌ ଠାରୁ ବିଦାୟ ନେବାକୁ ଭାବିଲା । ତେଣୁ ସେ ଓ୍ୟାଙ୍ଗ୍‌ଉସ୍‌ ଘରକୁ ଗଲା । ଦୁଇବନ୍ଧୁଙ୍କର କିଛିବେଳ ଗପ ଚାଲିଲା । ତାପରେ ରାଜପୁତ୍ର ଯିବାକୁ ବାହାରିଲା । ଆସିଲାବେଳେ ଓ୍ୟାଙ୍ଗ୍‌ଉସ୍‌କୁ କହିଲା—"ମୁଁ ଆଜି ହ୍ରଦକୁ ଝାସଦେବା ପାଇଁ ଯାଉଛି । ତୋ ସାଥିରେ ଆଉ ଦେଖାହେବ ନାହିଁ । ତୋଠାରୁ ମୁଁ ଶେଷବିଦାୟ ନେବାକୁ ଆସିଥିଲି ।"

ଓ୍ୟାଙ୍ଗ୍‌ଉସ୍‌ ଆଶ୍ଚର୍ଯ୍ୟ ହୋଇଗଲା । ନିଷ୍ପତ୍ତି ବିଷୟରେ ସବୁ ଶୁଣିସାରି କହିଲା—"ତୁ ଏ ରାଜ୍ୟର ଯୁବରାଜ । ତୁ ଚାଲିଗଲେ ରାଜାଙ୍କ ପରେ କେହି ରାଜା ହେବାକୁ ନ ଥିବେ । ରାଜ୍ୟରେ ଅରାଜକତା ବ୍ୟାପିଯିବ । ଧନ, ଜୀବନ ବିପନ୍ନ ହେବ । ଲୋକଙ୍କର ମଙ୍ଗଳପାଇଁ ତୋ ବଦଳରେ ମତେ ହ୍ରଦପାଖକୁ ଯିବାକୁ ଦେ ।"

ଜଗ୍‌ମୀ ଏଥିରେ ରାଜି ହେଲା ନାହିଁ । ବହୁ ସମୟଧରି ଯୁକ୍ତିତର୍କ ଚାଲିଲା । ଶେଷରେ ଦୁଇବନ୍ଧୁ ସାଙ୍ଗ ହୋଇ ହ୍ରଦ-ପାଖକୁ ଯିବାକୁ ସ୍ଥିର କଲେ । କଥା ରହିଲା—ପରଦିନ ସକାଳୁ ଯିଏ ଆଗ ଉଠିବ ସେ ହ୍ରଦରେ ଝାସଦେବ ।

ଜଗ୍‌ମୀ ଓ ଓ୍ୟାଙ୍ଗ୍‌ଉସ୍‌ ଡେରିରେ ହ୍ରଦ ପାଖରେ ପହଞ୍ଚିଲେ । ହ୍ରଦ ଚାରିପଟେ ତ ପାହାଡ଼ । ପାହାଡ଼ ତଳେ ପରିଷ୍କାର ଜାଗାଟିଏ ଦେଖି ଦୁଇଜଣଯାକ ଶୋଇଲେ । ଉଭୟେ

ଉଦ୍‌ବିଗ୍ନ । ପରସ୍ପରର ଖାଦ୍ୟସଂଗ୍ରହ କରିବାପାଇଁ ବ୍ୟସ୍ତ । ତେଣୁ ଆଖିକୁ ସେମାନଙ୍କର ନିଦ ନାହିଁ । ଏହିକବେଳେ ଦୁଇଟିଯାକ ବିରାଟ ବେଙ୍ଗ ଶେର୍‌ବାଲ୍ ଆଉ ଯୁର୍‌ବାଲ୍ ହ୍ରଦର କୂଳକୁ ଆସୁଥିବାର ସେମାନେ ଦେଖିଲେ ।

ଶେର୍‌ବାଲ୍ ଯୁର୍‌ବାଲ୍‌କୁ କହିଲା—"ଏଇ ଯେଉଁ ଦୁଇଜଣ ଯୁବକ ଏଥର ଝାସଦେବାକୁ ଆସିଛନ୍ତି, ସେମାନଙ୍କୁ ଦେଖିଲେ ମନେହୁଏ ଯେ, ସେମାନେ ଖୁବ୍ ବଳବାନ୍ । ସେମାନେ ଯଦି ହ୍ରଦକୁ ନ ଡେଇଁ ଆମକୁ ଆକ୍ରମଣ କରନ୍ତେ, ମୁଁ ସୁନା ବାନ୍ତିକରି ମରନ୍ତି ଓ ତୁ ମାଣିକ ବାନ୍ତିକରି ମରନ୍ତୁ ।"

ଯୁର୍‌ବାଲ୍ କହିଲା—"ସେମାନେ ଯଦି ଆମର ମାଣିକ ଓ ସୁନା ବାନ୍ତିକୁ ନିଜେ ଗିଳିଦିଅନ୍ତେ, ତା'ହେଲେ ସେମାନେ ଯେତେବେଳେ ଇଚ୍ଛା କରନ୍ତେ, ସୁନା ଓ ମାଣିକ ବାନ୍ତି କରନ୍ତେ ।"

ବେଙ୍ଗମାନେ ଏଥର କନ୍ଦ ଘର ଚିନ୍ତିତ ଓ ବିବ୍ରତ ଦେଖା ଯାଉଥାଆନ୍ତି । ଦି' ଯାକଙ୍କ ଶୋଇ ନଥିଲେ । ସେମାନେ ତାଙ୍କ କଥାସବୁ ଶୁଣିଲେ ।

ବଡ଼ି ସକାଳୁ ଉଠି ଦୁଇବନ୍ଧୁଯାକ ହ୍ରଦକୁ ଡେଇଁଲେ ନାହିଁ । ବରଂ ବେଙ୍ଗ ଦୁଇଟିଙ୍କୁ ଆକ୍ରମଣ କଲେ । ଯୁଦ୍ଧ ଚାଲିଲା । ଶେଷରେ କୌଶଳ ଓ ବଳ ଖଟେଇ ଦୁଇବନ୍ଧୁ ବେଙ୍ଗ ଦୁଇଟିଙ୍କୁ ମାରିଦେଲେ । ମରିବା ପୂର୍ବରୁ ଶେର୍‌ବାଲ୍ ସୁନା ଓ ଯୁର୍‌ବାଲ୍ ମାଣିକ ବାନ୍ତିକଲା । ସେମାନେ ତ ଆଗରୁ ଜାଣିଥିଲେ ଯେ, ଏଇ ସୁନା ଓ ମାଣିକ ଗିଳିଦେଲେ ଯେତେବେଳେ ଚାହିଁବେ, ସେମାନେ ମଧ୍ୟ ସୁନା ଓ ମାଣିକ ବାନ୍ତିକରି ପାରିବେ । ତେଣୁ ଜଗ୍‌ମୀ ଓ ଓ୍ୟାଙ୍ଗଡ଼ସ୍ କାଳବିଳମ୍ବ ନକରି ସୁନା ଓ ମାଣିକକୁ ଗିଳିଦେଲେ ।

ତାପରେ ସେମାନେ କୁଆଡ଼େ ଯିବେ କଛି ସ୍ଥିର କରି ପାରିଲେ ନାହିଁ। ଜର୍ମୀ କହିଲା—“ବେଙ୍ଗ ଦୁଇଟି ଆମକୁ ଖାଇ ଦେଇଥିବେ ବୋଲି ଲୋକଙ୍କର ବିଶ୍ୱାସ। ଆମେ ରାଜ୍ୟକୁ ଫେରିଗଲେ, ଲୋକେ ଭୂତବୋଲି ଭାବିବେ। ଆଦର ତ ଦୂରର କଥା, ଆମକୁ ଠେଙ୍ଗା ପକାଇବେ। ତେଣୁ ଆମେ ଆଉ ରାଜ୍ୟକୁ ଫେରିବା ନାହିଁ।” ଓ୍ୟାଙ୍ଗ୍‌ଡ଼ସ୍‌ ସେଥିରେ ରାଜିହେଲା।

ଦୁଇବନ୍ଧୁ ଆଉ ଏକ ନୂଆ ରାଜ୍ୟର ଅନୁସନ୍ଧାନରେ ବାହାରିଲେ। ବାଟରେ କେତେଦିନ କଟିଗଲା। ଶେଷକୁ ସେମାନେ ଗୋଟିଏ ଗାଁରେ ପହଞ୍ଚିଲେ। ସେଠି କେତେକ ପିଲା ଗୋଟିଏ ଟୋପିକୁ ନେଇ କଳି ଲଗାଇଥାନ୍ତି। ସେମାନେ କଳି ଛିଣ୍ଡାଇବା ପାଇଁ ମଧ୍ୟସ୍ଥ ହେଲେ। ତେଣୁ ଟୋପିପାଇଁ ଏତେ କଳିର କାରଣ ଜାଣିବାକୁ ଚାହିଁଲେ। ପିଲାମାନେ କହିଲେ— “ଏହା ଏକ ଅଦ୍ଭୁତ ଟୋପି। ଯାହାକୁ ଯିଏ ପିନ୍ଧିବ, ସେ ଅଦୃଶ୍ୟ ହୋଇଯିବ।”

ଓ୍ୟାଙ୍ଗ୍‌ଡ଼ସ୍‌ କହିଲା—“ଏଇ ଗୋଟେ କଥା। ଏଥିପାଇଁ ଏତେ କଳି। ଆସ, ମୁଁ ସବୁ ତୁଟାଇ ଦେବି।”

ପିଲାମାନେ ତା’ କଥାରେ ରାଜି ହୋଇଗଲେ। ଓ୍ୟାଙ୍ଗ୍‌ଡ଼ସ୍‌ ସେମାନଙ୍କୁ ଗୋଟିଏ ଦୂର ଜାଗାକୁ ଦେଖାଇ କହିଲା “ଏଇ ସ୍ଥାନରୁ ଯିଏ ଦୌଡ଼ିକରି ସେଠି ପହଞ୍ଚିଯିବ ପୁଣି ସେଠୁ ଦୌଡ଼ିକରି ଆଗ ଆସି ଏଠି ପହଞ୍ଚିଯିବ ସେ ଟୋପି ପାଇବ।”

ସେ ଟୋପି ପାଖରେ ବସିଲା। ପିଲାମାନେ ଦୂରଜାଗାକୁ ଦୌଡ଼ିବା ପାଇଁ ପ୍ରସ୍ତୁତ ହୋଇଗଲେ। ଓ୍ୟାଙ୍ଗ୍‌ଡ଼ସ୍‌ ଏକ, ଦୁଇ, ତିନି କହିବାମାତ୍ରେ, ପିଲାମାନେ ଦୌଡ଼ିବାକୁ ଆରମ୍ଭ କଲେ। ପିଲାମାନେ ଯେତେବେଳେ ଦୌଡ଼ାରେ ବ୍ୟସ୍ତ, ଟୋପିଟି ପିନ୍ଧି ଓ୍ୟାଙ୍ଗ୍‌ଡ଼ସ୍‌ ନିଜେ ଅଦୃଶ୍ୟ ହୋଇଗଲା। ପିଲାମାନେ ଦୂର

ଜାଗାକୁ ଦୌଡ଼ିକରିଯାଇ ପୁଣି ଓ୍ୟାଙ୍ଗ୍ ଡ଼ସ୍ ବସିଥିବା ସ୍ଥାନକୁ ଫେରି ଆସିଲେ । ପିଲାଏ ଆସି ଦେଖିଲେ ଯେ, ଓ୍ୟାଙ୍ଗ୍ ଡ଼ସ୍ ସେଠାରେ ନାହିଁ କି ଟୋପି ବି ନାହିଁ । ଓ୍ୟାଙ୍ଗ୍ ଡ଼ସ୍ ଯେ ତାଙ୍କୁ ଠକି ପଳାଇଲା ଏଥିରେ ତାଙ୍କର ଆଉ ସନ୍ଦେହ ରହିଲା ନାହିଁ । ମନଦୁଃଖରେ ସେମାନେ ଘରକୁ ଚାଲିଗଲେ ।

ଜଗ୍‌ମୀ ତା' ବନ୍ଧୁକୁ ନ ଦେଖି ମନ ଦୁଃଖରେ ବସିଥାଏ । ହଠାତ୍ କାହାର ସ୍ପର୍ଶରେ ସେ ଆଖି ବୁଲାଇଲା । ଦେଖିଲା— ଓ୍ୟାଙ୍ଗ୍ ଡ଼ସ୍ ଟୋପିଟିଧରି ତା' ପାଖରେ ଠିଆ ହୋଇଛି ।

ତା'ପରେ ସେମାନେ ସାଥିହୋଇ ଚାଲିଲେ । ଯାଉ ଯାଉ ବାଟରେ ଆଉ ଗୋଟିଏ ଗାଁ ପଡ଼ିଲା । କେତେଗୁଡ଼ିଏ ଲୋକ ସେଠି ପାଟିଗୁଣ୍ଡ କରୁଥାଆନ୍ତି । ସେମାନେ ପଚାରି ବୁଝିଲେ— ଦୁଇଟି ସୁନ୍ଦର କାରୁକାର୍ଯ୍ୟ କରା ଜୋତା ସେଠାରେ ଅଛି । ସେ ଜୋତା ଯିଏ ପିନ୍ଧିବ, ସେ ଯୁଆଡ଼େ ଇଚ୍ଛା କରିବ, ସିଆଡ଼େ ଯାଇପାରିବ । ସେ ଜୋତାକୁ ନେବାପାଇଁ ପ୍ରତ୍ୟେକଙ୍କର ଦାବି । ସେଥିପାଇଁ ଗଣ୍ଡଗୋଳ ।

ଦୁଇବନ୍ଧୁ ସେମାନଙ୍କ କଳି ଛଡ଼ାଇ ଦେବେ ବୋଲି ଜବାବ ଦେଲେ । ତାପରେ ସଭା ବସି ସ୍ଥିର ହେଲା, ଯିଏ ସବୁଠାରୁ ଶୀଘ୍ର ଦଉଡ଼ି ପାରିବ, ସେଇ ହିଁ ଜୋତାର ମାଲିକ ହେବ । ଦୁଇବନ୍ଧୁଙ୍କ ଉପସ୍ଥିତିରେ ଦୌଡ଼ା ଆରମ୍ଭ ହେଲା । ଲୋକମାନେ ଯେତେବେଳେ ଦୌଡ଼ାରେ ବ୍ୟସ୍ତ, ଜଗ୍‌ମୀ ଓ ଓ୍ୟାଙ୍ଗ୍ ଡ଼ସ୍ ପ୍ରତ୍ୟେକେ ଗୋଟିଏ ଲେଖାଏଁ ଜୋତା ପିନ୍ଧି ଅଦୃଶ୍ୟ ହୋଇଗଲେ । ଲୋକମାନେ ଦୌଡ଼ାସାରି ଆସି ସେମାନଙ୍କୁ ଆଉ ପାଇଲେ ନାହିଁ । ତାପରେ କାନମୁଣ୍ଡ ଆଉଁସି ଯେଝା ଘରକୁ ଚାଲିଗଲେ ।

ଟୋପି ଓ ଜୋତାର ସେମାନେ ବର୍ତ୍ତମାନ ମାଲିକ । ବର୍ତ୍ତମାନ ଯେଉଁ ରାଜ୍ୟର ରାଜା ଖୋଜା ପଡ଼ୁଥିବେ, ସେଠାକୁ

ଯିବାକୁ ସେମାନେ ବୁଝିଁଲେ । ଘଣ୍ଟେ ଲେଖାଁଏ କୋଡା ପିନ୍ଧିବାରୁ ସେମାନେ ଗୋଟିଏ ଅଜଣା ଦେଶରେ ପହଞ୍ଚିଗଲେ ।

ସେଠାରେ ଗୋଟିଏ ବଡ଼ ପଡ଼ିଆରେ ବହୁତ ଲୋକଙ୍କ ସମାଗମ । ଦୁଇବନ୍ଧୁ ସେଠାରେ ପହଞ୍ଚି ଜାଣିଲେ ଯେ, ସେ ରାଜ୍ୟର ରାଜା ମରିଯାଇଛନ୍ତି । ତାଙ୍କର ଏକମାତ୍ର ଝିଅଟି ଅଛି । ରାଜ୍ୟର ପ୍ରଥା ଅନୁସାରେ ଆଜ ରାଜକୁମାରୀ ପଡ଼ିଆକୁ ଆସିବେ । ସେ ଛତ୍ରରେ ତିଆରି ମୂର୍ତ୍ତିଟିଏ ସାଙ୍ଗରେ ଆଣିଥିବେ । ସେ ପଡ଼ିଆ ଭିତରେ ଜନଗହଳରେ ଯାଉଯାଉ ମୂର୍ତ୍ତିଟିକୁ ପକେଇ ଦେବେ । ଯାହା ଦେହରେ ଏହି ମୂର୍ତ୍ତି ବାଜିବ, ସେ ହିଁ ତାଙ୍କ ସ୍ୱାମୀ ହେବ । ତା' ପରେ ସେ ଏ ଦେଶର ନୂଆରାଜା ହେବ ।

ରାଜା ବାଛିବାର ପଦ୍ଧତି ଓ୍ୟାଙ୍ଗ୍‌ଡ୍‌ସ୍ ଓ ଜର୍ମୀଙ୍କ ମନକୁ ପାଇଲା ନାହିଁ । ଲୋକମାନେ ରୁଣ୍ଡ ହୋଇଥିବା ପଡ଼ିଆଠାରୁ ଅନତିଦୂରରେ ସିଙ୍ଗ୍‌କୁସୁ ଗଛ । ଦୁଇବନ୍ଧୁ ସେଇ ଗଛ ମୂଳକୁ ଯାଇ ବସିଲେ । ରାଜକୁମାରୀ କେଉଁଠି ଆସିବେ ଓ କିଏ ରାଜା ହେବ, ସେ କଥା ଦେଖିବାକୁ ତାଙ୍କର ଖୁବ୍ କୌତୂହଳ । ସେମାନେ ବିନଯାକ ବୁଲି ବୁଲି କ୍ଲାନ୍ତ । ତେଣୁ ଗଛମୂଳେ ବସୁ ବସୁ ସେଠାରେ ଶୋଇଗଲେ ।

ଏଣେ ରାଜକୁମାରୀ ପଡ଼ିଆକୁ ଆସିଲେ । ଗହଣରେ ସଖୀମାନେ । ସେ ଜନଗହଳ ମଧ୍ୟରେ ବୁଲିଥାଆନ୍ତି । ଯାଉ ଯାଉ ହଠାତ୍ ଛତ୍ରୁ ମୂର୍ତ୍ତିଟିକୁ ଫିଙ୍ଗିଦେଲେ । ମୂର୍ତ୍ତିଟି ଯାଇ ସିଙ୍ଗ୍‌କୁସୁ ଗଛରେ ବାଜିଲା । ସମବେତ ଜନତା ସେଇ ଗଛ-ପାଖକୁ ଦୌଡ଼ିଲେ । ଦେଖିଲେ—ଦୁ'ଜଣ ଅଚିହ୍ନା ଲୋକ ସେଠାରେ ଶୋଇଛନ୍ତି । ଲୋକମାନଙ୍କ ପାଟିତୁଣ୍ଡରେ ଦୁଇବନ୍ଧୁ ଉଠି ବସିଲେ ।

ନିୟମାନୁସାରେ, ଏଇ ଲୋକ ଦୁଇଟି ରାଜା ହେବାର କଥା । କିନ୍ତୁ ସେମାନେ ଅପରିଚିତ । ତେଣୁ ସେମାନଙ୍କୁ ରାଜା କରିବାକୁ ଲୋକମାନେ କୁଣ୍ଠିତହେଲେ । ଏପରି ସ୍ଥଳେ ପୂର୍ବରୁ ନିର୍ଦ୍ଧାରିତ ପ୍ରଥା ଅନୁସାରେ ମୁଖ୍ୟ ଲାମାଙ୍କର ପରାମର୍ଶ ଲୋଡ଼ା ହେଲା ।

ମୁଖ୍ୟ ଲାମା ସେମାନଙ୍କୁ ପରୀକ୍ଷା କରିବାକୁ ସ୍ଥିର କଲେ । ସେମାନେ ରାଜକୁମାରୀଙ୍କୁ ଅତି ମୂଲ୍ୟବାନ୍ ଉପହାର ଦେବାପାଇଁ ସେମାନଙ୍କୁ ଆଦେଶ ଦେଲେ । ଜିଗ୍‌ମୀ ଓ ଓ୍ୟାଙ୍ଗ୍‌ଡ଼ସ୍ ଠିଆ ହୋଇ ବାନ୍ତି କଲେ । ସୁନା ଓ ମାଣିକ ସ୍ତୂପ ଆକାରରେ ଗଦା ହୋଇଗଲା । ସମବେତ ଜନତାଙ୍କୁ ତାହା ଆଶ୍ଚର୍ଯ୍ୟ କରିଦେଲା ।

ଜିଗ୍‌ମୀକୁ ଏଥର ଲୋକମାନେ ରାଜା କରିବାକୁ ରାଜି । ରାଜକୁମାରୀଙ୍କ ସହିତ ତା'ର ବିବାହ ମଧ୍ୟ ସ୍ଥିର । ତେଣୁ ଅଭିଷେକ ଖୁବ୍ ଜାକଜମକରେ ହେଲା । ଜିଗ୍‌ମୀ ବର୍ତ୍ତମାନ ସେହି ରାଜ୍ୟର ରାଜା । ଆଉ ଡେରି ନ କରି ପରମବନ୍ଧୁ ଓ୍ୟାଙ୍ଗ୍‌ଡ଼ସ୍‌କୁ ସେ ନିଜର ମନ୍ତ୍ରୀ କରିନେଲେ ।

ଓ୍ୟାଙ୍ଗ୍‌ଡ଼ସ୍ ଟୋପିଟା ପିନ୍ଧି ଅଦୃଶ୍ୟ ହୋଇଯାଏ । ଜୋତା ପିନ୍ଧି ସବୁଆଡ଼େ ବୁଲେ । ଏଇମିତି ଭାବରେ, ସେ ଚାରିଆଡ଼କୁ ଯାଇ ରାଜ୍ୟରେ ସମସ୍ତ ଖବର ସଂଗ୍ରହ କରେ । ସବୁକଥା ସେ ଜିଗ୍‌ମୀକୁ ଜଣାଏ । ଏଥର ଦେଶର ଖଳ ଓ ଦୁଷ୍ଟ ଲୋକଙ୍କ କଥା ରାଜାଙ୍କୁ ଅଛପା ରହିଲା ନାହିଁ । ସମସ୍ତଙ୍କୁ ଧରି ଆଣି ସେ ଜେଲ୍‌ରେ ପୂରାଇ ଦେଲେ । ଲୋକଙ୍କର ଅଭାବ ସବୁ ଜାଣିପାରି ଦୂର କରି ଦେଉଥିଲେ ।

ଲୋକମାନେ ସୁଖ ସ୍ୱାଚ୍ଛନ୍ଦ୍ୟରେ ରହିଲେ । ବହୁବର୍ଷ ପର୍ଯ୍ୟନ୍ତ ଜିଗ୍‌ମୀ ରାଜ୍ୟରେ ରାଜା ହୋଇ ରାଜୁତି କଲେ ।

---

# ପୃଥିବୀର ଲୋକକଥା




ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ
ଗୋ। ଦିଘାଳ ଜି. - ପୁରୀ